# ଜ୍ଞାନସାଥୀ : ବିଶ୍ୱରଚନା (୪)

ଓ

# ପଠାଣି ସାମନ୍ତ


୧୯ଶ ବର୍ଷ-୩ୟ ସଂଖ୍ୟା

୧୯୮୧

ସମ୍ପାଦକ :

ଶ୍ରୀ ବୀରେନ୍ଦ୍ର କୁମାର ସାମନ୍ତରାୟ

ପରିଚାଳନା ସମ୍ପାଦକ :

ଶ୍ରୀ ନବକିଶୋର ମହାପାତ୍ର

ପ୍ରକାଶକ ଓ ମୁଦ୍ରକ

କେ. ମହାପାତ୍ର ଏଣ୍ଡ କୋ.ଙ୍କ

ତରଫରୁ

ଶ୍ରୀ ବୃନ୍ଦାବନ ଦାସ

ଗ୍ରାମପଞ୍ଚାୟତ ପ୍ରେସ

କଟକ-୨ ରେ ମୁଦ୍ରିତ

ମୂଲ୍ୟ— ଟ ୯-୦୦


## ସୂଚୀପତ୍ର

୧୯୫୬ ମସିହାର ରେଜିଷ୍ଟ୍ରେସନ ଅଫ୍ ନିଉଜ ପେପରସ୍ (ସେଣ୍ଟ୍ରାଲ)
ନିୟମ ଅନୁଯାୟୀ

## ଘୋଷଣାପତ୍ର

(ଚତୁର୍ଥ ଫର୍ମ, ଅଷ୍ଟମଧାର)

| | | |
|---|---|---|
| ୧ । ପତ୍ରିକାର ନାମ | .... .... | ଛତ୍ରସାଥୀ |
| ୨ । ପ୍ରକାଶ ସମୟ | ... ... | ପ୍ରତି ମାସ ୧ ତାରିଖ |
| ୩ । ପ୍ରକାଶ ସ୍ଥାନ | .... .... | କଟକ |
| ୪ । ମୁଦ୍ରାକରଙ୍କ ନାମ | .... .... | ଶ୍ରୀ ବୃନ୍ଦାବନ ଦାସ |
| ଜାତୀୟତା | .... .... | ଭାରତୀୟ |
| ଠିକଣା | .... .... | ଜେ. ମହାପାତ୍ର ଏଣ୍ଡ କୋ, କଟକ-୨ |
| ୫ । ପ୍ରକାଶକଙ୍କ ନାମ | .... .... | ଜେ. ମହାପାତ୍ର ଏଣ୍ଡ କୋ, କଟକ-୨ ଙ୍କ ପକ୍ଷରୁ ଶ୍ରୀ ବୃନ୍ଦାବନ ଦାସ |
| ଜାତୀୟତା | .... | ଭାରତୀୟ |
| ଠିକଣା | | ଜେ. ମହାପାତ୍ର ଏଣ୍ଡ କୋ. କଟକ-୨ |
| ୬ । ସଂପାଦକଙ୍କ ନାମ | .... .... | ଶ୍ରୀ ନବକିଶୋର ମହାପାତ୍ର |
| ଜାତୀୟତା | .... .... | ଭାରତୀୟ |
| ଠିକଣା | .... .... | ଜେ. ମହାପାତ୍ର ଏଣ୍ଡ କୋ, କଟକ-୨ |
| ୭ । ସ୍ୱତ୍ତ୍ୱାଧିକାରୀଙ୍କ ନାମ | .... | ଜେ. ମହାପାତ୍ର ଏଣ୍ଡ କୋ, ଭାଷାକୋଷ ଲେନ୍, କଟକ-୨ |

ମୁଁ ଶ୍ରୀ ବୃନ୍ଦାବନ ଦାସ, ଏତଦ୍ୱାରା ଘୋଷଣା କରୁଅଛି ଯେ, ଉପରୋକ୍ତ ବିବରଣୀ ଗୁଡ଼ିକ ସତ୍ୟ ବୋଲି ମୋର ବିଶ୍ୱାସ ଓ ହୃଦ୍‌ବୋଧ ହୋଇଅଛି ।

ତା ୨୮ । ୨ । ୧୯୮୧ — ସ୍ୱା-ଶ୍ରୀ ବୃନ୍ଦାବନ ଦାସ

# ଉତ୍କଳ ଚନ୍ଦ୍ରମା ପଠାଣି ସାମନ୍ତ

## ଚନ୍ଦନ ଗଛଟିଏ—

ଜଙ୍ଗଲରେ ତ ନାନା ଜାତିର ଗଛଲତା ଥାନ୍ତି, ହେଲେ ସେମାନଙ୍କୁ ଗୋଟିଗୋଟି କରି କିଏ ଚିହ୍ନେ ? କିଏ ବା ସେମାନଙ୍କ ପାଖକୁ ଯାଏ ? କିନ୍ତୁ ସେଇ ଗଛଲତାଙ୍କ ମେଳରେ ଯଦି ଚନ୍ଦନ ଗଛଟିଏ ରହିଯାଇଥାଏ, ତେବେ ତାର ସୁବାସରେ ଚାରିଆଡ଼ ମହକି ଉଠେ । ଲୋକେ ସେ ସୁବାସରେ ମୁଗ୍ଧ ହୁଅନ୍ତି । ଆପେ ଆପେ ତା ଆଡ଼କୁ ଟାଣି ହୋଇଯାନ୍ତି । ବଣର ଚନ୍ଦନ ଗଛପରି ଆମ ଓଡ଼ିଶା ମୁଲକରେ ଜଣେ ଗୁଣର ମଣିଷ ଥିଲେ । ତାଙ୍କ ନାଁ ସାମନ୍ତ ଚନ୍ଦ୍ରଶେଖର, କିନ୍ତୁ ପଠାଣି ସାମନ୍ତ ନାଁରେ ସେ ଚାରିଆଡ଼େ ଜଣାଶୁଣା ।

## ବିଷ୍ଣୁମାଳୀଙ୍କ ଦୁଃଖ—

ଏବେ ଖଣ୍ଡପଡ଼ା ପୁରିଜିଲ୍ଲାର ଛୋଟ ସହରଟିଏ କହିଲେ ଚଳେ କିନ୍ତୁ ଦୁଇ ଶହ ବର୍ଷ ତଳେ ଏଇଟି ଗୋଟିଏ ଗଡ଼ଜାତ ରାଜ୍ୟ ଥିଲା । ପୁରୁଷୋତ୍ତମ ମର୍ଦ୍ଦରାଜ ଭ୍ରମରବର ରାୟ ବୋଲି ଜଣେ ରାଜା ଏଠି ରାଜୁତି କରୁଥିଲେ । ତାଙ୍କର ଜଣେ ସାନ ଭାଇ ଥାନ୍ତି । ତାଙ୍କ ନା ଶ୍ୟାମବନ୍ଧୁ ସାମନ୍ତ ।

ଶ୍ୟାମବନ୍ଧୁ ଯେମିତି ଜ୍ଞାନୀ, ସେମିତି ଗୁଣୀ, ଦୁଃଖୀରଙ୍କିଙ୍କୁ ସାହାହେବା ଏବଂ ଅତିଥି ଅଭ୍ୟାଗତଙ୍କୁ ଚର୍ଚ୍ଚା କରିବାରେ ତାଙ୍କର ଜାଣ ବେଳ କଟିଯାଏ । ରାଜାଘର ପୁଅ ହେଲେ କ'ଣ ହେଲା, ତାଙ୍କ ମନରେ ଗର୍ବ କି ଅହଙ୍କାର ଟିକିଏ ବୋଲି ନଥାଏ । ସାଧାରଣ ଲୋକଙ୍କ ପରି ସେ ଚଳିଯାଉଥିଲେ । ତାଙ୍କ ସ୍ତ୍ରୀ ବିଷ୍ଣୁମାଳୀ ବି ଠିକ୍ ତାଙ୍କରି ପରି । କାହାରି ଦୁଃଖ ଦେଖିଲେ ତାଙ୍କ ଆଖିରୁ ଲୁହ ବହି ପଡ଼ୁଥିଲା । ହେଲେ ଗୋଟିଏ କଥାରେ ସବୁବେଳେ ତାଙ୍କ ମନଟି ଊଣା । ଗୋଟିଗୋଟି କରି ଦଶଟି ପୁଅ ଝିଅ ତାଙ୍କ କୋଳ ଖାଲି କରି ଚାଲିଯାଇଥିବାରୁ ସେ ଏ ଆଖିଲୁହ ସେ ଆଖିରେ ମାରି ଅତି ଦୁଃଖରେ ଦିନ କାଟୁଥାନ୍ତି ।

## ଠାକୁରଙ୍କ ଆଜ୍ଞା ମିଳିଲା—

ଖଣ୍ଡପଡ଼ା ଗଡ଼ଠାରୁ ପ୍ରାୟ ଷାଠିଏ କିଲୋମିଟର ଦୂରରେ ଖଣ୍ଡପଡ଼ା ଟୋଲା ଗାଁଟିଏ । ସେଇ ଗାଁରେ ଚନ୍ଦ୍ରଶେଖର ମହାଦେବଙ୍କ ମନ୍ଦିର । ଚନ୍ଦ୍ରଶେଖର

ଘର ପ୍ରତ୍ୟକ୍ଷ ଦେବତା । ଯାହାକୁ କହନ୍ତି ଡାକିଲେ ଜବାବ ଦେବେ । ଦିନେ ବିଷ୍ଣୁମାଳୀ ସେଇଠିକି ଗଲେ । ଠାକୁରଙ୍କ ପାଖରେ ନିଜର ଦୁଃଖ ଜଣାଇ ଅଧିଆ ପଡ଼ିଲେ ।

ରାତ ଅଧକରୁ ବଳି ଗଲାଣି, ନିଶା ସାଇଁସାଇଁ ଗର୍ଜୁଛି । ମନ୍ଦିର ଭିତରେ ବିଷ୍ଣୁମାଳୀଙ୍କୁ ଟିକେ ଛାଇ ନିଦ ଲାଗିଯାଇଥାଏ । ଏତିକିବେଳେ ସେ ସ୍ୱପ୍ନରେ ଦେଖିଲେ; ଠାକୁର ତାଙ୍କ ଆଗରେ ଠିଆହୋଇ କହୁଛନ୍ତି–"ବିଷ୍ଣୁମାଳୀ ତୋ ପ୍ରାର୍ଥନାରେ ମୁଁ ସନ୍ତୁଷ୍ଟ ହୋଇଛି । ଏବେ ନିଦରୁ ଉଠି ମୋର ଏଇ ଲିଙ୍ଗ ଋଷିପଟେ ହାତବୁଲାଇ ଆଣିବୁ, ଯାହା ପାଇବୁ ଖାଇଦେବୁ । ତାହେଲେ ତୋ ମନକାମନା ପୂର୍ଣ୍ଣ ହେବ । ଏତିକି କହି ଠାକୁର ଉଭେଇ ଗଲେ ।

ବିଷ୍ଣୁମାଳୀଙ୍କ ନିଦଟା ଛଉଁକନା ଭାଙ୍ଗିଗଲା । ସେ ବସିବା-ଜାଗାରୁ ଉଠିଯାଇ ଶିବଲିଙ୍ଗ ଋଷିପାଖେ ହାତ ବୁଲାଇ ଆଣିଲେ । କଳା ମୁଗୁନି ପଥରର ଛୋଟ ଶାଳଗ୍ରାମ ମୂର୍ତ୍ତିଟିଏ ତାଙ୍କ ହାତରେ ପଡ଼ିଲା । ସାଂଙ୍ଗ ସାଙ୍ଗେ ସେ ମୂର୍ତ୍ତିଟିକୁ ଗିଳିଦେଲେ ଏବଂ ଗମ୍ଭିର ଭିତରୁ ଆଞ୍ଜୁଳାଏ ପାଦୁକ ପାଣି ଆଣି ପିଇଦେଲେ । ତାପରେ ଠାକୁରଙ୍କୁ ମୁଣ୍ଡିଆଟିଏ ମାରି ଘରକୁ ଫେରିଲେ ।

କେତେଦିନ ବିତିଗଲା । ସେଦିନ ୧୮୩୪ ମସିହା ପୌଷ ମାସ ଅଷ୍ଟମୀ ତିଥି । ବିଷ୍ଣୁମାଳୀଙ୍କ କୋଳକୁ ପୁଅଟିଏ ଆସିଲା । ଠାକୁର ଚନ୍ଦ୍ରଶେଖରଙ୍କ ଦୟାରୁ ପୁଅଟି ପାଇଥିବାରୁ ଶ୍ୟାମସୁନ୍ଦୁ ପୁଅର ନାଁ ଦେଲେ ଚନ୍ଦ୍ରଶେଖର ।

## ଆଉ ଗୋଟେ ନାଁ ପଠାଣି—

କାହାର ପ୍ରଥମ ପୁଅ କି ଝିଅ ମରିଯାଇଥିଲେ, ତା ତଳେ ଯେଉଁ ପୁଅଟି ଜନ୍ମ ହୁଏ; ଲୋକେ ତାକୁ ଅପର୍ତ୍ତିଆଣି ପିଲା ବୋଲି କହନ୍ତି । ଏଇ ଅପର୍ତ୍ତିଆଣି ପିଲାର ବାପ ମା'ମାନେ ଭାବନ୍ତି; ଆଗ ପିଲାଟିକୁ ତ ଯମ ନେଇଛି, କାଳେ ଏଇଟିକି ପୁଣି ମୁହଁ ବଢ଼େଇବ । ଏଇ ଭୟରେ ସେମାନେ ପୁଅଟିର ନାକ କାନ ଫୋଡ଼ି ପକାନ୍ତି । ଝିଅଙ୍କ ପରି ଗହଣା ପିନ୍ଧାନ୍ତି, କାରଣ ଝିଅ ବୋଲି ଜାଣିଲେ ଯମ ତାକୁ ନେବାକୁ ମନ କରିବନି । ଆଉ କେତେକ ବାପମା ପିଲାଙ୍କୁ ବାବାଜି, ବଇଷମ, ପଠାଣ, ଗନ୍ଧିଆ, ହାଡ଼ିଆ ଆଦି ନାଁ ଦେଇଥାନ୍ତି । ଏମିତି ଅସୁନ୍ଦର ନାଁ ଦେଲେ ବି ଯମ ଆଉ ପିଲା ଉପରେ ଆଖି ପକାଇବନି ବୋଲି ସେମାନେ ଭାବନ୍ତି । ସେମିତି ଚନ୍ଦ୍ରଶେଖରଙ୍କ ଉପରେ ତ ଦଶଟି ଭାଇ ଭଉଣୀ ମରି ଯାଇଥାନ୍ତି, ତେଣୁ ବିଷ୍ଣୁମାଳୀ ପୁଅର ଅପର୍ତ୍ତିଆଣି ନାଁ ଦେଲେ ପଠାଣି । ରଜପଡ଼ିବାଭର ସାଙ୍ଗିଆ ହେଉଛି ସାମନ୍ତ । ତେଣୁ ସେ ହେଲେ ପଠାଣି ସାମନ୍ତ ।

ଚନ୍ଦ୍ରଶେଖର କହିଲେ ତାଙ୍କୁ ଅନ୍ୟ କେତେଜଣ ଜାଣନ୍ତି, କିନ୍ତୁ ପଠାଣି ସାମନ୍ତ କହିଲେ ସମସ୍ତେ ତାଙ୍କୁ ଜାଣନ୍ତି ।

## ତୁଳସୀ ଦୁଇ ପତ୍ରରୁ ବାସେ—

ତୁଳସୀ ଦୁଇ ପତ୍ରରୁ ବାସିଲା ପରି, ବଡ ହେଲେ ଚନ୍ଦ୍ରଶେଖର ଯେ ଜଣେ ପଣ୍ଡିତ ହେବେ, ଏକଥା ତାଙ୍କ ପିଲାଟି ବେଳରୁ ଜଣାପଡି ଯାଇଥିଲା । ତାଙ୍କ ସାଙ୍ଗ ସାଥୀମାନେ ଦାଣ୍ଡରେ ଧୂଳି ଖେଳୁଥିଲା ବେଳେ ଚନ୍ଦ୍ରଶେଖର ଗଛର ଛାଇ ମାପିବାରେ ଲାଗିଥାନ୍ତି । ଆକାଶରେ ଶାଗୁଣା ଦଳେ କି ଚଢେଇ ପଞ୍ଝାଏ ଉଡିଗଲେ, ସେମାନଙ୍କୁ ଗଣିବାରେ ଲାଗିଯାନ୍ତି । ଏ ସବୁ କାମରେ ତାଙ୍କର ଏମିତି ମନ ଲାଗିଯାଏ ଯେ, ସେ ନିଜ ଖିଆପିଆ କଥା ବି ଭୁଲିଯାନ୍ତି । ଦିନସାରା ତ ଏମିତି କଟେ । ସଞ୍ଜ ହେଲେ ପୁଣି ଖେଳିବାକୁ ବାହାରି ପଡନ୍ତି । ଗାଁ ମୁଣ୍ଡ ଖୋଲା ପଡିଆରେ ଖେଳ ଚଳେ, ହେଲେ ଖେଳରେ ଜମା ତାଙ୍କ ମନ ନ ଥାଏ । ସେ ଖାଲି ଆକାଶକୁ ଚାହିଁ ଚାହିଁ ତାରାମାନଙ୍କୁ ଦେଖୁଥାନ୍ତି । ଖେଳ-ଭିତରେ ସେ ସାଙ୍ଗମାନଙ୍କୁ ପଚାରନ୍ତି ଆକାଶରେ କେତେ ତାରା ଅଛନ୍ତି କହି ପାରିବ ? ଏଇ ଦେଖ; ଏ ତାରାଟି କିପରି ଦପ୍‌ଦପ୍‌ ହୋଇ ଜଳିଉଠୁଛି । ଆଉ ସେପଟ ତାରାଟି କିପରି ମିଞ୍ଜିମିଞ୍ଜି ହୋଇ ଆଲୁଅ ଦେଉଛି । ସାଙ୍ଗମାନେ ଆକାଶକୁ ଚାହିଁ ଖାଲି ତାରାମାନଙ୍କୁ ଯାହା ଦେଖନ୍ତି, କିନ୍ତୁ ଚନ୍ଦ୍ରଶେଖରଙ୍କ କଥାରୁ କିଛି ବୁଝି ପାରନ୍ତିନି ।

## ଦିନରେ ତାରା ଦେଖିଲେ—

ସେଦିନ ସକାଳେ ଚନ୍ଦ୍ରଶେଖର ସାଙ୍ଗ ସାଥୀଙ୍କ ମେଳରେ ଚକାଭଉଁରୀ ଖେଳୁଥାନ୍ତି । ତାଙ୍କ ବାପା ଶ୍ୟାମବନ୍ଧୁ ଦାଣ୍ଡ ବାରଣ୍ଡାରେ ବସି ପିଲାଙ୍କ ଖେଳ ଦେଖୁଥାନ୍ତି । ଚନ୍ଦ୍ରଶେଖରଙ୍କର କିନ୍ତୁ ଖେଳରେ ମନ ନଥାଏ । ସେ ଖାଲି ଉପରକୁ ଚାହିଁ ଚାହିଁ କ'ଣ ଗୁଡାଏ ଭାବି ହେଉଥାନ୍ତି । ଏମିତି ଭାବୁଭାବୁ, କେତେବେଳେ ସେ ହାତ ଛାଡ ଦେଇଛନ୍ତି; ନିଜେ ବି ଜାଣିପାରି ନାହାନ୍ତି । ସାଙ୍ଗମାନେ ଦୁଲଦାଲ ହୋଇ ତଳେ ପଡିବାରୁ ତାଙ୍କର ଜ୍ଞାନ ହୋଇଆସିଲା । ହେଲେ ସେ କଥାରେ ନଜର ନ ଦେଇ ସେ ପାଟିକରି ଉଠିଲେ—"ଦେଖ ଦେଖ; ଆକାଶରେ ଗୋଟେ ତାରା ଦେଖାଯାଉଛି ।"

ତାରା ଦେଖିବାପାଇଁ ସବୁ ପିଲା ତଳୁ ଉଠି ଆକାଶକୁ ଚାହିଁଲେ । ହେଲେ କେହି ଜଣେ ବି ତାରା ଦେଖି ପାରିଲେ ନାହିଁ । ପୁଅ କଥା ଶୁଣି ଶ୍ୟାମବନ୍ଧୁ ବାରଣ୍ଡା ତଳକୁ ଓହ୍ଲାଇ ଆସି ଦେଖିଲେ ସତକୁ ସତ ତାରାଟିଏ ।

ଦିନରେ ତାର ଦେଖିଲେ ଅମଙ୍ଗଳ ହୁଏ ବୋଲି ଲୋକେ କହନ୍ତି । ପୁଅ ତାର ଦେଖିଥିବାରୁ ତାଙ୍କ ମନ ଖରାପ ହୋଇଗଲା । ସେ ଚନ୍ଦ୍ରଶେଖରଙ୍କୁ କାଖକରି ଘରକୁ ନେଇଗଲେ । ପୁଅର କିଛି ଅମଙ୍ଗଳ ନ ହେଉ–ଏଇ କଥା ମନାସି ଦିଅଁ ଦେବତାଙ୍କ ପାଖେ ଭୋଗ ଲଗାଇଲେ ।

## ଓଳିଆରୁ ପଢ଼ା ଗଲା—

ସେତେବେଳେ ଆଜିକାଲିକା ପରି ଗାଁମାନଙ୍କରେ ସ୍କୁଲ ବସି ନଥିଲା । ତେଣୁ ପିଲାମାନେ ଗାଁ ଚାହାଳିରେ ଅବଧାନଙ୍କ ପାଖେ ପାଠ ପଢୁଥିଲେ । ସେତେବେଳେ ଚାହାଳିରେ ପଣିକିଆ, ପାହିଅଣା, କଡ଼ାଗଣ୍ଡା, ନଳକୋଟା ଆଦି ପାଠ ପଢ଼ା ହେଉଥିଲା । ତା ସାଙ୍ଗକୁ କେଶବ କୋଇଲି, ଗୋପୀଭାଷା, ଭାଗବତ ଆଦି ପୋଥିପାଠ ବି ପିଲାଏ ପଢୁଥିଲେ । ବହି, କାଗଜ, କଲମ ଆଦି ସେତେବେଳେ ଦେଖିବାକୁ ସାତସପନ । ତେଣୁ ପିଲାଠୁଁ ବୁଢ଼ାଯାଏଁ ସମସ୍ତେ ତାଳପତ୍ର ପୋଥି ପଢୁଥିଲେ ।

ଚନ୍ଦ୍ରଶେଖରଙ୍କର ପାଠପଢ଼ା ବୟସ ହେବାରୁ ଶ୍ୟାମବନ୍ଧୁ ତାଙ୍କୁ ଗାଁ ଚାହାଳିରେ ବସାଇ ଦେଲେ । ଚନ୍ଦ୍ରଶେଖର ଏମିତି ମନ ଲଗାଇ ପଢ଼ିଲେ ଯେ, ବର୍ଷ ଦିଟାରେ ତାଙ୍କର ଚାହାଳି ପାଠ ସବୁ ସରିଗଲା । ତେଣୁ ସେ ଆଉ ଚାହାଳିକି ନଯାଇ ଘରେ ରହିଲେ । ତାଙ୍କ ଘରେ ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ ସାମନ୍ତସିଂହାର, ଦୀନକୃଷ୍ଣ ଦାସ ଆଦି କବିମାନଙ୍କ ଲେଖାର ଯେତେ ପୋଥି–ଥିଲା, ଚନ୍ଦ୍ରଶେଖର ସେସବୁକୁ ପଢ଼ି ଶେଷକରି ଦେଲେ । ଖାଲି ପଢ଼ିଲେନି, ନିଜ ଚେଷ୍ଟାରେ ସବୁ ଗୀତର ଅର୍ଥ ମଧ୍ୟ କରି ଦେଉଥିଲେ ।

## ଆଉ ଟିକିଏ ଆଗେଇ ଗଲେ—

ସେତେବେଳେ ରଜା ଘରମାନଙ୍କରେ ସଂସ୍କୃତ ଭାଷାର ଭାରି ଆଦର ଥାଏ । ତେଣୁ ରାଜପରିବାରର ସମସ୍ତେ ପ୍ରାୟ ଓଡ଼ିଆ ଅପେକ୍ଷା ଅଧିକେ ସଂସ୍କୃତ ଜାଣନ୍ତି । ଚନ୍ଦ୍ରଶେଖରଙ୍କର ଓଡ଼ିଆ ପାଠ ସବୁ ସରି ଯିବାରୁ, ଶ୍ୟାମବନ୍ଧୁ ତାଙ୍କୁ ଡଗିରିଆର ଜଣେ ପଣ୍ଡିତଙ୍କ ପାଖକୁ ସଂସ୍କୃତ ପଢ଼ିବାକୁ ପଠାଇଲେ । ଚନ୍ଦ୍ରଶେଖର ଗୁରୁଙ୍କ ପାଖରେ ରହି ଏମିତି ମନଲଗାଇ ପଢ଼ିଲେ ଯେ, ଦିନ କେଇଟା ଭିତରେ ସଂସ୍କୃତ ବ୍ୟାକରଣ, ପୁରାଣ, ଆୟୁର୍ବେଦ, ବେଦବେଦାନ୍ତ ଆଦି ପଢ଼ି ଶେଷ କରିଦେଲେ । ସେତେବେଳକୁ ତାଙ୍କୁ ଆୟତ କରିଦେବା ଦେଖି ତାଙ୍କ ଗୁରୁ ଏକଦମ୍ ଆଶ୍ଚର୍ଯ୍ୟ ହୋଇ ଯାଉଥିଲେ । ବଡ ହେଲେ ଚନ୍ଦ୍ରଶେଖର ଯେ ଜଣେ ବଡ଼ ପଣ୍ଡିତ ହେବେ, ଏକଥା ତାଙ୍କ ଗୁରୁ ବେଶ୍ ଜାଣିପାରିଥିଲେ ।

## ଜ୍ୟୋତିଷ ପାଠରେ ମନ—

ଅଙ୍କ, ସାହିତ୍ୟ ଏବଂ ବିଜ୍ଞାନ ପରି ଜ୍ୟୋତିଷ ବି ଏକ ପ୍ରକାର ପାଠ । ଏ ପାଠ ପୁଣି ଦୁଇ ପ୍ରକାରର । ଗୋଟିଏ 'ଫଳିତ ଜ୍ୟୋତିଷ' ଏବଂ ଆରଟି ଗଣିତ ଜ୍ୟୋତିଷ, ଗାଁ ଗହଳିର ଅବଧାନମାନେ ଲୋକଙ୍କ ହାତ ଦେଖି କିମ୍ବା ଜାତକ ଦେଖି, ଯେଉଁ ଭଲମନ୍ଦ କଥା କହନ୍ତି ତାକୁ ଫଳିତ ଜ୍ୟୋତିଷ କୁହା-ଯାଏ । ଏ ପାଠ ସାଧିବା ଖୁବ୍ ସହଜ । କିନ୍ତୁ ଗଣିତ ଜ୍ୟୋତିଷ ପାଠଟି ହେଲା ଆକାଶରେ ଗ୍ରହ ତାରା ଆଦିଙ୍କ ବିଷୟରେ ଜାଣିବା । ସେମିତି ଜ୍ଞାନୀ ଏବଂ ପଣ୍ଡିତ ନ ହେଲେ ଏ ପାଠ ସହଜରେ ଆୟତ କରି ହେବନି ।

ଶ୍ୟାମବନ୍ଧୁଙ୍କୁ ଫଳିତ ଜ୍ୟୋତିଷ ପାଠଟି ବେଶ୍ ଜଣାଥିଲା । ତେଣୁ ଚନ୍ଦ୍ରଶେଖର ବାପାଙ୍କଠୁ ଖୁବ୍ ସହଜରେ ସେତକ ଶିଖିଗଲେ । ଲୋକଙ୍କ ଜାତକ ଦେଖି ସେ ଏମିତି ନିର୍ଭୁଲଭାବେ ଗଣନା କରି ଦେଉଥିଲେ ଯେ, ତାଙ୍କ କଥା ଅକ୍ଷରେ ଅକ୍ଷରେ ସତ ହେଉଥିଲା । ତେଣୁ ଆଖପାଖ ଗାଁମାନଙ୍କରୁ ସବୁ-ବେଳେ ତାଙ୍କ ପାଖକୁ ଲୋକ ଜାତକ କିମ୍ବା ହାତ ଦେଖାଇବାକୁ ଆସୁଥିଲେ ।

ଚନ୍ଦ୍ରଶେଖରଙ୍କର ଜଣେ କକା ଥାଆନ୍ତି । ଗଣିତ ଜ୍ୟୋତିଷ ପାଠଟି ବି ତାଙ୍କୁ ବେଶ୍ ଜଣା । ଚନ୍ଦ୍ରଶେଖରଙ୍କ ଆଗ୍ରହ ଦେଖି କକା ତାଙ୍କୁ ଏ ପାଠଟି ଶିଖାଇ ଦେଲେ ଏବଂ ଆକାଶରେ କେତୋଟି ତାରାଙ୍କୁ ମଧ୍ୟ ଚିହ୍ନାଇ ଦେଲେ । ଚନ୍ଦ୍ରଶେଖରଙ୍କୁ ପନ୍ଦର ବର୍ଷ ହେଲା ବେଳକୁ, ଗଣିତ ଜ୍ୟୋତିଷରେ ବି ସେ କିଛି ଆଗେଇ ଯାଇଥିଲେ ।

## ଆମେ କ'ଣ ଶିଶୁପାଳ ହୋଇ ଫେରିବା ?—

ଖଣ୍ଡପଡାପରି ଅନୁଗୁଳ ବି ଗୋଟିଏ ଗଡଜାତ ରାଜ୍ୟ ଥିଲା ଏବଂ ସେଠି ଜଣେ ରଜା ରାଜୁତି କରୁଥିଲେ । ସେଇ ରଜାଙ୍କ ପରିବାର ଭିତରେ ସୀତାବୋଲି ଖୁବ୍ ସୁନ୍ଦରୀ ଝିଅଟିଏ ଥାଏ । ଝିଅଟି ରୂପରେ ଯେମିତି ଢଳଢଳ ଗୁଣରେ ବି ସେମିତି ସୁନ୍ଦର । ଚନ୍ଦ୍ରଶେଖରଙ୍କୁ ବାଇଶ ବର୍ଷ ବେଳେ; ସୀତା ଦେବୀଙ୍କ ସାଙ୍ଗରେ ତାଙ୍କର ବିଭାଘର ହେବ ବୋଲି ଠିକ୍ ହେଲା ।

ବର ଆଉ ବରଯାତ୍ରୀ ବେଶ୍ ଯାକଜମକରେ ଅନୁଗୁଳରେ ପହଞ୍ଚିଲେ । ବିଭାଘର ଆରମ୍ଭ ହେଲା । ଚନ୍ଦ୍ରଶେଖର ଭିନା ପାଠରେ ପଣ୍ଡିତ, ହେଲେ ତାଙ୍କ ରୂପଟି ଦେଖିବାକୁ ଭାରି ଅସୁନ୍ଦର । ତେଣୁ କନ୍ୟାର ମା ଭାଇଙ୍କ ରୂପ ଦେଖି ଏକଦମ୍ ବିଗିଡିଗଲେ । ଏ ବିଭାଘର ହୋଇ ପାରିବନି ବୋଲି ଅଡିବସିଲେ ।

ଚନ୍ଦ୍ରଶେଖର ଚୁପଚାପ ବେଦି ଉପରେ ବସିଥାନ୍ତି । ଏଠିକବେଳେ ଡଣେ ବରଯାତ୍ରୀ ପଚାରିଲେ—ତାହେଲେ ଆମେ କ'ଣ ଶିଶୁପାଳ ହୋଇ ଫେରିଯିବା ?

ଚନ୍ଦ୍ରଶେଖର ଟିକିଏ କ'ଣ ଭାବିଲେ । ତାପରେ 'ଦମୟନ୍ତୀ ସ୍ୱୟଂବର'ରୁ କେତୋଟି ଶ୍ଳୋକ ପଢ଼ି ଏମିତ ସୁନ୍ଦର ଭାବେ ବୁଝାଇ ଦେଲେ ଯେ; ଲୋକେ ତାଙ୍କୁ ଧନ୍ୟ ଧନ୍ୟ କଲେ । ଏଥର ଶାଶୁ ଜାଣିଲେ, ଜ୍ୱାଇଁ ଦେଖା ରୂପରେ ଅସୁନ୍ଦର, ହେଲେ ଗୁଣରେ ମହାପଣ୍ଡିତ । ତେଣୁ ସେ ଆଉ ଅଟକି ହେଲେନି । ବେଶ୍ ସୁରୁଖୁରୁରେ ବିଭାଘର ସରିଗଲା ।

## ଯାହା ଦେଖିବ, ସେଇଆ ଲେଖିବ—

ଆକାଶରେ କେଉଁ ଗ୍ରହ କେତେବେଳେ କେଉଁଠି ଉଦୟ ହେଉଛି, କେଉଁବାଟେ ଯାଇ କେଉଁଠି ଅସ୍ତ ହେଉଛି, ସେସବୁ କଥା ଜାଣିବା ପାଇଁ ଚନ୍ଦ୍ରଶେଖର ସାରାରାତି ଅନିଦ୍ରା ରହି ସେମାନଙ୍କୁ ଲକ୍ଷ୍ୟ କରୁଥାନ୍ତି । ତାଙ୍କ ପାଖରେ 'ସୂର୍ଯ୍ୟ ସିଦ୍ଧାନ୍ତ' ଏବଂ 'ସିଦ୍ଧାନ୍ତ ଶିରୋମଣି' ବୋଲି ଦୁଇଟି ପୋଥି ଥାଏ । ଏଥିରେ ଗ୍ରହ ଏବଂ ନକ୍ଷତ୍ରମାନଙ୍କ କଥା ଲେଖା ହୋଇଥାଏ । କିନ୍ତୁ ଚନ୍ଦ୍ରଶେଖର ଆକାଶକୁ ଚାହିଁ ଚାହିଁ ଯାହା ଜାଣିଲେ, ସେସବୁ ପୋଥିପାଠ ସାଙ୍ଗରେ ମେଳ ଖାଇଲାନି । ପୋଥିର ଲେଖା ଅନୁସାରେ କେଉଁଗ୍ରହ କେତେବେଳେ କେଉଁଠି ରହିବ, ତାହା ଠିକ୍ କଲାପରେ, ଆକାଶକୁ ଚାହିଁ ଦେଖନ୍ତି ତ, ସେ ଗ୍ରହ ସେଠି ନାହିଁ, ତେଣୁ ସେ ବଡ଼ ଅଡୁଆରେ ପଡ଼ିଗଲେ । ପୋଥିପାଠ ଭୁଲ କି ଯାହା ନିଜେ ଦେଖିଲେ ସେ କଥା ଭୁଲ, ସେ ଜାଣିପାରିଲେ ନାହିଁ । ତେଣୁ ସେ ମନକୁମନ ଭାବିଲେ, ପୋଥିପାଠ ଛାଡ଼ିଦେଇ, ଏଣିକି ଯାହା ଆଖିରେ ଦେଖିବି, ସେଇଆ ଲେଖିବି ।

## ବାଉଁଶ ନଳୀରେ ଆକାଶମପା—

ଗ୍ରହ ଏବଂ ନକ୍ଷତ୍ରମାନଙ୍କ ବିଷୟରେ ଯେଉଁଠି ନାନା ପ୍ରକାର ପରୀକ୍ଷା କରଯାଏ, ତାକୁ 'ମାନମନ୍ଦିର' କୁହାଯାଏ । ଏହି 'ମାନମନ୍ଦିର' ଖୁବ ଗୋଟିଏ ଉଚ୍ଚ ଜାଗାରେ ତିଆରି ହୋଇଥାଏ ଏବଂ ତା' ଭିତରେ 'ଦୂରବୀକ୍ଷଣ ଯନ୍ତ୍ର'-ଟିଏ ବି ଥାଏ । ସେଇ ଯନ୍ତ୍ରରେ ଚାହିଁଲେ ଲକ୍ଷଲକ୍ଷ କିଲୋମିଟର ଦୂରରେ ଥିବା ଜିନିଷ ବି ଆଖିକୁ ଦେଖାଯାଏ । କିନ୍ତୁ ଚନ୍ଦ୍ରଶେଖର କେବଳ ଦୂରବୀକ୍ଷଣ ଯନ୍ତ୍ରର ନାଁ ଶୁଣିଥାନ୍ତି, ଆଖିରେ କେବେ ଦେଖିନଥାନ୍ତି । ତେଣୁ ଖାଲି ଆଖିରେ ଆକାଶକୁ ଚାହିଁ ଗ୍ରହତାରାମାନଙ୍କୁ ଲକ୍ଷ୍ୟ କରିବାରେ, ତାଙ୍କର ଭାରି ଅସୁବିଧା ହେଉଥାଏ ।

ଏମିତ କେତେଦିନ କଟିଗଲା । ଦିନେ ସେ 'ପ୍ରାଚୀନ ସିଦ୍ଧାନ୍ତ' ବୋଲି ବହିଟିଏ ପାଇଗଲେ । ସେଥିରେ 'ମାନଯନ୍ତ୍ର' ତିଆରି କରିବା କୌଶଳ ଲେଖା ହୋଇଥିଲା । ସେଇ ଲେଖାପଢ଼ି ଚନ୍ଦ୍ରଶେଖର ବାଉଁଶ ନଳୀରେ ଯୋଡ଼ିଏ ମାନ-ଯନ୍ତ୍ର ତିଆରି କରିନେଲେ ; ଯେଉଁଥିରୁ ଗୋଟିକରେ ବେଳମାପି ଠିକ୍ କରିହେବ ଏବଂ ଆଉଟିରେ ଆକାଶକୁ ଚାହିଁ କେଉଁ ଗ୍ରହ କେତେ ଦୂରରେ ଅଛି ତାହା ଜାଣିହେବ । ଏହି ଯନ୍ତ୍ର ଦୁଇଟି ତିଆରି କରିନେଲା ପରେ, ତାଙ୍କର ଆଉ କିଛି ଅସୁବିଧା ରହିଲାନାହିଁ । ଆକାଶଦେଖା କାମ ବେଶ୍ ସୁରୁଖୁରୁରେ ଚାଲିଲା । ଆଗରୁ ସେ ଯାହାସବୁ ଗଣନାକରି ଜାଣିଥିଲେ, ଏବେ ସେ ସବୁକୁ ମାନ ଯନ୍ତ୍ରରେ ମିଳାଇ ଦେଖିଲେ ଏକଦମ୍ ଠିକ୍ । ଜମା ଟିକେ ବି ଭୁଲ ନାହିଁ ।

ସମସ୍ତେ ଧନ୍ୟ ଧନ୍ୟ କହିଲେ—

ଅମାବାସ୍ୟା, ପୂର୍ଣ୍ଣମୀ, ସୂର୍ଯ୍ୟ ପରାଗ, ଚନ୍ଦ୍ରଗ୍ରହଣ, ବିଭିନ୍ନ ପର୍ବ ପର୍ବାଣୀ ଆଦି କେବେ ପଡ଼ିବ, ସେ ସବୁ ପାଞ୍ଜିରେ ଲେଖା ହୋଇଥାଏ । ଆମ ଲୋକେ ସେଇ ପାଞ୍ଜି ନିୟମକୁ ମାନି ଚଳନ୍ତି । ପୁରୀ ଜଗନ୍ନାଥଙ୍କ ମନ୍ଦିରରେ ଠାକୁର-ମାନଙ୍କର ସେବା ପୂଜା ବି ସେଇ ପାଞ୍ଜିର ବେଳକାଳ ଅନୁସାରେ ହୁଏ, କିନ୍ତୁ ସେତେବେଳେ ଯେଉଁ ପାଞ୍ଜିଟି ଚଳୁଥିଲା ସେଥିରେ ଅନେକ ଭୁଲ ଥିବା କଥା ଚନ୍ଦ୍ରଶେଖର ଜାଣିପାରିଲେ । ଏକଥା ତାଙ୍କୁ ଭାରି ଖରାପ ଲାଗିଲା । ସେ ମନକୁ ମନ ଭାବିଲେ, ଯେଉଁ ଜଗନ୍ନାଥ ମହାପ୍ରଭୁ ଓଡ଼ିଆ ଜାତିର ଇଷ୍ଟ ଦେବତା, ତାଙ୍କ ସେବା ପୂଜା ପୁଣି ଗୋଟାଏ ଭୁଲ ପାଞ୍ଜି ଅନୁସାରେ ଚଳିବ ? ଏଇଆ ଭାବି ସେ ଆଉ ଗୋଟିଏ ପାଞ୍ଜି ଲେଖିଲେ ଏବଂ ସେଇଟିକୁ ନେଇ ପୁରୀ ଗଲେ । ପୁରୀ ମୁକ୍ତିମଣ୍ଡପ ପଣ୍ଡିତ ସଭାରେ ନିଜ ପାଞ୍ଜିଟି ଦାଖଲ କରି, ଆଗରୁ ଚଳୁଥିବା ପାଞ୍ଜିଟିରେ କି କି ଭୁଲ ଅଛି ସେକଥା ପଣ୍ଡିତମାନଙ୍କୁ ଜଣାଇଦେଲେ । ପଣ୍ଡିତମାନେ ଏବେ ମହା ଅଡୁଆରେ ପଡ଼ିଲେ । କେଉଁ ପାଞ୍ଜିଟି ଠିକ୍, କେଉଁ ପାଞ୍ଜିଟି ଭୁଲ ସେମାନେ ଠିକ୍ କରିପାରିଲେନି । ଏଇ ପାଞ୍ଜିକଥା ବିଚାର କରିବା ପାଇଁ ସେମାନେ ଗୋଟିଏ ବଡ଼ ପଣ୍ଡିତ ସଭା ଡକାଇଲେ । ଭାରତର ଚାରିଆଡ଼ୁ ବଡ଼ବଡ଼ ପଣ୍ଡିତ ଏବଂ ଜ୍ୟୋତିଷମାନେ ସଭାକୁ ଆସିଲେ । ଦୁଇଟିଯାକ ପାଞ୍ଜି ଉପରେ ଆଲୋଚନା ହେଲା । ଶେଷରେ ଚନ୍ଦ୍ରଶେଖରଙ୍କ ପାଞ୍ଜିଟି ଏକଦମ୍ ଠିକ୍ ବୋଲି ପଣ୍ଡିତମାନେ ମତଦେଲେ । ଚନ୍ଦ୍ରଶେଖରଙ୍କ ପାଞ୍ଜି ଅନୁସାରେ ଜଗନ୍ନାଥଙ୍କ ମନ୍ଦିରରେ ସେବା ପୂଜା ଚାଲିଲା ।

## ରାଜା ଜନ୍ମୁ ସହୁ ପାରନ୍ତନି—

ଚନ୍ଦ୍ରଶେଖରଙ୍କ ଭଇଙ୍କ ପୁଅ ସେତେବେଳକୁ ଖଣ୍ଡପଡ଼ାର ରଜା ହୋଇଥାନ୍ତି । ସେ ପିଲା ଥିଲାବେଳେ ଚନ୍ଦ୍ରଶେଖରଙ୍କ ସାଙ୍ଗେ ଖିଆପିଆ, ଖେଳବୁଲ ଆଦି ଏକାଠି କରୁଥିଲେ । ହେଲେ କ'ଣ ହବ; ପିଲାଟିବେଳୁ ତାଙ୍କ ପ୍ରକୃତି ଖରାପ; ତେଣୁ ରଜା ହେଲାପରେ ବି ସେ ତାଙ୍କ ବଦ୍ ପ୍ରକୃତି ଛାଡ଼ି ପାରିଲେନି ।

ସେତେବେଳକୁ ଚନ୍ଦ୍ରଶେଖର ବି ବେଶ୍ ଜଣାଶୁଣା ହୋଇ ଯାଇଥାନ୍ତି । ତେଣୁ ଖଣ୍ଡପଡ଼ା ରାଜ୍ୟର ଲୋକେ ତାଙ୍କୁ ଜାଣ ଦେବତାପରି ମାନୁଥାନ୍ତି । ଦିନ ରାତି ସବୁବେଳେ ତାଙ୍କ ପାଖରେ ଲୋକ ଗହଳି ଲାଗିଥାଏ । କିଏ ଜାତକ ଦେଖାଇବାକୁ ଆସିଥାଏ ତ, କିଏ ହାତ ଦେଖାଇ ଭଲ ମନ୍ଦ ବୁଝିବାକୁ ଆସିଥାଏ । ଚନ୍ଦ୍ରଶେଖର ସମସ୍ତଙ୍କ କଥା ବୁଝନ୍ତି । ସେମାନଙ୍କ ଭଲ ମନ୍ଦ କଥା ଗୋଟି ଗୋଟି କରି ବୁଝାଇ ଦିଅନ୍ତି । କାହାକୁ ହେଲେ ମନାକରି ଫେରାଇ ଦିଅନ୍ତିନି । ଏକଥା ଦେଖି ରଜା ଖାଲି ରାଗରେ ଜଳିଯାଉଥାନ୍ତି, କିନ୍ତୁ ମୁହଁ ଖୋଲି କିଛି କହି-ପାରନ୍ତିନି ।

ଚନ୍ଦ୍ରଶେଖର ବି ରଜାଙ୍କ ମନକଥା ବେଶ୍ ଜାଣନ୍ତି । ହେଲେ ସେସବୁ କଥାରେ ଜମା ମୁଣ୍ଡ ପୂରାନ୍ତି ନାହିଁ । ସେ କୋଉ ବା ଖରାପ କାମ କରୁଛନ୍ତି ଯେ ରଜାଙ୍କୁ ଡରିବେ ।

## ସାଧନାର ଫଳ : ସିଦ୍ଧାନ୍ତ ଦର୍ପଣ—

ଚନ୍ଦ୍ରଶେଖର ଯେଉଁ ଘରେ ରହନ୍ତି; ସେ ଘର ଛାଳରେ ଗୋଟିଏ କଣା ହୋଇଥାଏ । ଘର ଭିତରେ ବସି ସେଇ କଣାବାଟେ ଚାହିଁଲେ ଆକାଶ ବେଶ୍ ପରିଷ୍କାର ଦେଖାଯାଏ । ଚନ୍ଦ୍ରଶେଖର ନିତି ରାତିରେ ସେଇ କଣାବାଟେ ଆକାଶକୁ ଚାହାନ୍ତି । ପାଖରେ ଲେଖନ ଆଉ ତାଳପତ୍ର ଖେଦାଟିଏ ଥୁଆ ହୋଇ-ଥାଏ । ଆକାଶରେ ଯାହା ସବୁ ଦେଖନ୍ତି; ସେ ସବୁ ପୋଥିରେ ଲେଖିପକାନ୍ତି । କେତେବେଳେ ଯଦି ପାଖରେ ତାଳପତ୍ର କି ଲେଖନ ନ ଥାଏ; ତେବେ ଖଡ଼ି ଖଣ୍ଡେ କି ଅଙ୍ଗାର ଖଣ୍ଡେ ଧରି ଘର କାନ୍ଥରେ ଦେଖିଥିବା କଥା ସବୁ ଲେଖି ପକାନ୍ତି ।

ଦିନ ଓଳିକର କଥା ନୁହେଁ । ତିନବର୍ଷଯାଏଁ ନିତି ରାତିରେ ସେ ଏମିତି ଆକାଶ ଦେଖିବାରେ ଲାଗିଲେ । ଏହା ଭିତରେ ସେ ଯେଉଁ ସବୁ କଥା ପୋଥିରେ

ଟିପି ରଖିଥିଲେ; ସେଗୁଡକୁ ଶ୍ଲୋକ ଆକାରରେ ଲେଖିବାରେ ଲାଗିଗଲେ । ଏଥିପାଇଁ ତାଙ୍କୁ ଆହୁରି ତିନିବର୍ଷ ଲାଗିଗଲା ।

ଶ୍ଲୋକସବୁ ଲେଖା ସରିବା ପରେ ସେ ସେଗୁଡକୁ ଏକାଠି କରି ଗ୍ରନ୍ଥଟିଏ ତିଆରି କଲେ ଏବଂ ତାର ନାଁ ଦେଲେ 'ସିଦ୍ଧାନ୍ତ ଦର୍ପଣ' । ତାଙ୍କର ଛ'ବର୍ଷର ସାଧନାର ଫଳ ହେଲା ଏଇ ଜ୍ୟୋତିଷ ଗ୍ରନ୍ଥଟି । ଗ୍ରହ, ତାରା, ଆକାଶ ଆଦି ବିଷୟରେ ଅନେକ କଥା ଏଥିରେ ଲେଖା ହୋଇଥିଲା ।

## ଦେହ ପୁଣି ସହିଲେ ତ—

ଛ'ବର୍ଷ କାଳ ଦିନରାତି ସବୁବେଳେ କାମରେ ଲାଗି ରହିବାରୁ ତାଙ୍କ ଦେହ ଭାରି ଅସୁଖ ହେଲା । ଏତେ ଖଟଣି ସାଙ୍ଗକୁ ମାସକରୁ ପ୍ରାୟ କୋଡ଼ିଏ ଦିନ ତାଙ୍କର ବ୍ରତ ଉପାସରେ କଟେ । ସଂକ୍ରାନ୍ତି,ପୂର୍ଣ୍ଣମୀ,ଅମାବାସ୍ୟା ଆଦି ଦିନ-ମାନଙ୍କରେ ସେ ପାଣି ଟୋପେ ବି ଛୁଉଁ ନଥିଲେ । ଏଥିରେ ଦେହ କିପରି ଭଲ ରହନ୍ତା ? ସିଦ୍ଧାନ୍ତ ଦର୍ପଣ ଲେଖା ସରିଲା ବେଳକୁ ସେ ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ ଏବଂ ଶୂଳ ଆଦି ରୋଗରେ ଭାରି କଷ୍ଟ ପାଉଥାନ୍ତି । ଶୂଳ ରୋଗଟା ତାଙ୍କୁ ଏତେ କଷ୍ଟ ଦେଉଥାଏ ଯେ; ପେଟକୁ ଭାତ ବି ଯାଉନଥାଏ । ଏତେ କଷ୍ଟ ଭୋଗୁଥିଲେ ମଧ୍ୟ ସିଦ୍ଧାନ୍ତ ଦର୍ପଣ ଲେଖା କାମରେ କେବେହେଲେ ହେଳା କରି ନଥିଲେ ।

## ତାଙ୍କ ଘର ସଂସାର—

ଚନ୍ଦ୍ରଶେଖର ଜ୍ୟୋତିଷ ସାଧନାରେ ସବୁବେଳେ ଲାଗୁଥିବାରୁ ଘରକଥା ବୁଝିବାକୁ ତାଙ୍କୁ ଜମା ବେଳ ମିଳେନି । କିନ୍ତୁ ତାଙ୍କ ସ୍ତ୍ରୀ ସୀତା ଦେବୀ ଘର ଚଳାଇବାରେ ଭାରି ଧୁରନ୍ଧର । ଘରର ଭଲମନ୍ଦ, କୁଣିଆମଇତ୍ର, ବନ୍ଧୁ ବେଉର ଆଦି ସବୁକଥା ସେ ନିଜେ ବୁଝନ୍ତି । ତେଣୁ ଶେଖରଙ୍କ ମୁଣ୍ଡରେ ସେସବୁ ଚିନ୍ତା ନ ଥାଏ ।

ତାଙ୍କର ତିନି ପୁଅ । ବଡ଼ପୁଅ ପୀତାମ୍ବର, ମଝିଆଁ ପୁଅ ଗଦାଧର ଆଉ ସାନ ପୁଅ ଚକ୍ରଧର । ତିନି ଭାଇଯାକ ବାପାଙ୍କ ପରି ଜ୍ଞାନୀ ଆଉ ଗୁଣୀ ।

ଚନ୍ଦ୍ରଶେଖର ତ ରାଜବଂଶରେ ଜନ୍ମ ; ତେଣୁ ତାଙ୍କ ଘରର ଚଳଣି ଠିକ୍ ରାଜା ଘର ପରି । ହେଲେ ସେମିତି ଚଳିବାକୁ ତାଙ୍କର ରୋଜଗାର କିଛି ନ ଥାଏ । ତାଙ୍କ ପୂର୍ବପୁରୁଷମାନେ ରାଜାଙ୍କଠୁ କେତେଖଣ୍ଡ ଗାଁ ଜାଗିରି ପାଇଥିଲେ । ସେଇଥିରୁ ଯାହା ଆୟ ହୁଏ, ରୋଜଗାର ଜାଣ ସେତିକି । ଆଉ ପଇସାଟିଏ ବ

କୁଆଡୁ ମିଳିବାର ନ ଥାଏ । ତେଣୁ ତାଙ୍କୁ ସବୁବେଳେ ଅଭାବ । ଅଭାବ ମେଣ୍ଟାଇବା ପାଇଁ ସେ ମହାଜନମାନଙ୍କଠୁ ଟଙ୍କା କରଜ ଆଣନ୍ତି । ହେଲେ ତାକୁ ଅଣ୍ଟି ସୁଝିପାରନ୍ତି ନାହିଁ । ତେଣୁ କରଜ ଦିନକୁ ଦିନ ବଢ଼ି ଚାଲିଥାଏ ।

## ମନ କିନ୍ତୁ ଦରିଦ୍ର ନୁହେଁ—

ଚନ୍ଦ୍ରଶେଖରଙ୍କୁ ଯଦିଓ ସବୁବେଳେ ଅଭାବ, ହେଲେ ମନ ତାଙ୍କର ଦରିଦ୍ର ନୁହେଁ । ଯେ ଯାହା ମାଗେ, ସେ ତାକୁ ସେଇଆ ଦିଅନ୍ତି । ନାହିଁ ପଦ କେବେ ତାଙ୍କ ପାଟିରୁ ବାହାରେନି ।

ଥରେ ଜଣେ ବ୍ରାହ୍ମଣ, ତାଙ୍କ ପୁଅକୁ ବ୍ରତ କରିବେ ବୋଲି ଚନ୍ଦ୍ରଶେଖରଙ୍କୁ କିଛି ସାହାଯ୍ୟ ମାଗିବାକୁ ଆସିଥିଲେ । ହେଲେ ସେଦିନ ତାଙ୍କ ପାଖରେ ଗୋଟିଏ ହେଲେ ପଇସା ନ ଥାଏ । ତେଣୁ ସେ ଘରୁ ପିତଳ ହଣ୍ଡାଟିଏ ବନ୍ଧକ ରଖି ତିରିଶଟି ଟଙ୍କା ଆଣି ବ୍ରାହ୍ମଣଙ୍କୁ ଦେଲେ । ଟଙ୍କା ପାଇ ବ୍ରାହ୍ମଣଟି ଚନ୍ଦ୍ରଶେଖରଙ୍କୁ ଖୁବ୍ କଲ୍ୟାଣ କଲା ଏବଂ ଖୁସି ମନରେ ଘରକୁ ଫେରିଗଲା ।

ଆଉଥରେ ନୟାଗଡର ଜଣେ ବ୍ରାହ୍ମଣ ଶ୍ରାଦ୍ଧ ଖର୍ଚ୍ଚ ପାଇଁ କିଛି ସାହାଯ୍ୟ ମାଗିବାକୁ ଚନ୍ଦ୍ରଶେଖରଙ୍କ ପାଖକୁ ଆସିଲେ । ହେଲେ ସେଦିନ ବି ତାଙ୍କ ପାଖରେ କିଛି ନ ଥାଏ । ତେଣୁ ସେ ନିଜ ହାତରୁ ସୁନା ମୁଦିଟି ବାହାର କରି ଚାକରକୁ ଦେଲେ ଏବଂ କହିଲେ—ଏ ମୁଦିଟି କୋଉଠି ବନ୍ଧାରଖି ଟଙ୍କା ଦି'ଟା ଆଣିଥା, ସୁବିଧା ହେଲେ ମୁଁ ଟଙ୍କା ଦେଇ ମୁଦି ମୁକୁଳେଇ ଆଣିବି ।

ଚାକରଟି ମୁଦି ନେଇ ଜଣେ ଲୋକ ପାଖକୁ ଗଲା, କିନ୍ତୁ ସେ ଲୋକଟି ଚନ୍ଦ୍ରଶେଖରଙ୍କ ମୁଦି ବନ୍ଧା ରଖିବାକୁ ରାଜି ହେଲାନାହିଁ । ସେ ମୁଦି ସାଙ୍ଗରେ ଟଙ୍କା ଯୋଡ଼ିଏ ଚାକରକୁ ଦେଇ କହିଲା—ତାଙ୍କପରି ଲୋକଠୁଁ ମୁଁ ପୁଣି ଜିନିଷ ବନ୍ଧା ରଖିବି ? ତୁ ମୁଦି ନେଇଯା । ମୁଁ ଏ ଟଙ୍କା ଧାର ଦେଉଛି । ସୁବିଧା ହେଲେ ମୋତେ ଟଙ୍କା ଫେରାଇ ଦେବେ ।

ଚାକରଟି ଫେରିଆସି ସେଇ କଥା କହିବାରୁ, ଚନ୍ଦ୍ରଶେଖର କହିଲେ—ନାଁ ନାଁ ତା କେମିତ ହେବ ? ତୁ' ପୁଣିଥରେ ଯାଇ ମୁଦିଟି ଦେଇଆ । ନ ହେଲେ ମୋର ଦାନ ଦେଲାପଣ ହେବନାହିଁ ।

## ସମସ୍ତଙ୍କ କଥା ଭାବୁଥିଲେ—

ତାଙ୍କ ବାଡରେ ନୂଆ ହୋଇ କିଛି ପନପରିବା ହେଲେ ପ୍ରଥମେ ସେ ଠାକୁରଙ୍କୁ ଏବଂ ବ୍ରାହ୍ମଣଙ୍କୁ ସେଥିରୁ କିଛି ଦେଉଥିଲେ । ତାପରେ ସେ ପରିବା ତାଙ୍କ ଘରେ ରନ୍ଧା ହେଉଥିଲା ।

ଅରେ ତାଙ୍କ ବାଡରେ ନୂଆ ହୋଇ ବାଇଗଣ ଫଳିଥାଏ । ତେଣୁ ସେ ଜଣେ ବ୍ରାହ୍ମଣଙ୍କୁ ଯୋଡାଏ ବାଇଗଣ ଏବଂ ଗୋଟିଏ ପଇସା ଦେଇ କହିଲେ— ନରେ, ଏ ପଇସାକର ଘିଅ କିଣି ବାଇଗଣ ଭଜିବ, ତା ହେଲେ ଖାଇବାକୁ ସୁଖ ଲାଗିବ ।

ନରେ ବାଇଗଣ ନେଇ ଚାଲଗଲା ପରେ ତାଙ୍କ ପୁଅ ପଚାରିଲେ— ବାପା, ତାଙ୍କୁ ବାଇଗଣ ତ ଦେଲ, ପୁଣି ପଇସାଟିଏ ଦେଲ କାହିଁକି ?

ଚନ୍ଦ୍ରଶେଖର କହିଲେ—ନରେ ଗରିବ ଲୋକ । ସେ ପଇସା କେଉଁଠୁ ପାଇବେ ଯେ, ଘିଅ କିଣିବେ । ଆମେ ତ ପୁଣି ଘିଅରେ ବାଇଗଣ ଭଜି ଖାଉଛୁ । ସେଇଥିପାଇଁ ତାଙ୍କୁ ପଇସାଟି ଦେଲି । ଆମେ ଯେମିତି, ଅନ୍ୟମାନଙ୍କୁ ବି ସେମିତ ଭାବିବା ଦରକାର ।

## ନମ୍ରତା ଗୁଣୀର ଲକ୍ଷଣ—

କଥାରେ ଅଛି, ଫଳ ଭରରେ ଗଛ ଯେମିତି ନଇଁପଡେ, ଗୁଣୀ ଲୋକ-ମାନେ ସେମିତ ଜ୍ଞାନ ଭରରେ ନଇଁ ପଡନ୍ତି । ଚନ୍ଦ୍ରଶେଖର ଠିକ୍ ସେମିତି ଜଣେ ମଣିଷ ଥିଲେ । ତାଙ୍କଠି ଗର୍ବ କି ଅହଙ୍କାର ଟିକିଏ ବୋଲି ନଥିଲା । ସବୁବେଳେ ସେ ନିଜକୁ ଅତି ଛୋଟ ମନେ କରୁଥିଲେ । କେହି ତାଙ୍କୁ ପ୍ରଶଂସା କଲେ ସେ କହୁଥିଲେ—ଆଗକାଳରେ ଆମ ଦେଶରେ ଯେଉଁ ଜ୍ଞାନୀ ପଣ୍ଡିତମାନେ ଥିଲେ, ସେମାନଙ୍କ ପାଦ ଧୂଳିକ ବି ମୁଁ ସରି ନୁହେଁ । ଯେଉଁ ଜ୍ଞାନ ଟିକକ ମୁଁ ପାଇଛି, ତାହା କେବଳ ସେହି ପଣ୍ଡିତମାନଙ୍କ କଲ୍ୟାଣରୁ ।

ଥରେ ତାଙ୍କର ଜଣେ ପଡୋଶୀ ବ୍ରାହ୍ମଣଙ୍କ ପୁଅର ବ୍ରତ ହେଉଥାଏ । ପଡୋଶୀ ଜଣକ ଜାଣନ୍ତି ଯେ, ରାତି ବାରଟା ପରେ ଚନ୍ଦ୍ରଶେଖର ଆଉ କିଛି ଖାଆନ୍ତି ନାହିଁ । ଏଣେ ରାତି ବଳି ପଡୁଥାଏ । ବ୍ରାହ୍ମଣମାନଙ୍କ ଖିଆପିଆ ସରିଲା ବେଳକୁ ଆହୁରି ଅନେକ ଡେରି ହେବ । ତେଣୁ ସେ ରନ୍ଧା ଜିନିଷରୁ କିଛି ନେଇ ଚନ୍ଦ୍ରଶେଖରଙ୍କ ଘରକୁ ଗଲେ । ଚନ୍ଦ୍ରଶେଖର ଏକଥା ଜାଣିପାରି ପଡୋଶୀଙ୍କୁ କହିଲେ—ବ୍ରାହ୍ମଣମାନେ ନ ଖାଉଣୁ, ତମେ ମୋ ପାଇଁ ନେଇ ଆସିଲ ? ମୁଁ ଆଉ ଖାଇଦେଲେ; ଖାଦ୍ୟ ସବୁ ତାଙ୍କ ଅଇଁଠା ହୋଇଗଲା । ମୋ ଅଇଁଠାକୁ ସେମାନେ କିପରି ଖାଇବେ ?

ଏତିକି କହି ସେ ଗୋଟିଏ ଗାତ ଖୋଳି ଖାଇବା ଜିନିଷତକ ପୋତି ପକାଇଲେ । ବ୍ରାହ୍ମଣମାନଙ୍କୁ ସେ ଏମିତି ଭକ୍ତି କରୁଥିଲେ ।

## ଗୁଣ ଚିହ୍ନେ ଗୁଣିଆ—

ଚନ୍ଦ୍ରଶେଖର ଦିନକୁଦିନ ବୁଢା ହେଲେ । ଦେହରୁ ବଳ ଖସିଲା । ତେବେ ବି ସେ ତାଙ୍କ ସାଧନାରେ ଲାଗିଥାନ୍ତି । ସେଇ ଗ୍ରହ, ନକ୍ଷତ୍ର, ସୂର୍ଯ୍ୟ, ଚନ୍ଦ୍ର ଆଦିଙ୍କୁ ନେଇ ତାଙ୍କ ପରୀକ୍ଷା ଚାଲିଥାଏ ।

ଥରେ ସେ କଟକ ଯାଇ ଗୋଟିଏ ବସାଘରେ ରହୁଥାନ୍ତି । ତାଙ୍କ ବସାଠୁଁ ଅଳ୍ପ ଦୂରରେ ରେଭେନ୍‌ସା କଲେଜର ବିଜ୍ଞାନ ଅଧ୍ୟାପକ ଯୋଗେଶ ଚନ୍ଦ୍ର ରାୟଙ୍କ ଘର । ଚନ୍ଦ୍ରଶେଖରଙ୍କ ପରି ସେ ବି ଜଣେ ଗୁଣୀ ଲୋକ । ପ୍ରତିଦିନ ରାତିରେ ଆକାଶକୁ ଚାହିଁ ଗ୍ରହ ଏବଂ ତାରମାନଙ୍କୁ ଲକ୍ଷ୍ୟ କରିବା ତାଙ୍କର ଗୋଟାଏ ଅଭ୍ୟାସ । ଦିନେ ରାତିରେ ସେ ତାଙ୍କ କୋଠାଘର ଛାତ ଉପରେ ବୁଲୁ ବୁଲୁ ଜହ୍ନ ଆଲୁଅରେ ଦେଖିଲେ କେହି ଜଣେ ଆକାଶକୁ ଚାହୁଁ-ଛନ୍ତି ଏବଂ ତାପରେ ତାଳପତ୍ର ଖେଦାରେ କ'ଣ ସବୁ ଲେଖିଯାଉଛନ୍ତି । କଥା ଜାଣିବା ପାଇଁ ସେ ଆରଦିନ ଚନ୍ଦ୍ରଶେଖରଙ୍କୁ ନିଜ ଘରକୁ ଡାକି ଆଣିଲେ । ତାଙ୍କ ସାଙ୍ଗରେ ଚିହ୍ନା ପରିଚୟ ବି ହୋଇଗଲେ । କଥାବାର୍ତ୍ତା ଭିତରେ ଯୋଗେଶ ବାବୁ ଚନ୍ଦ୍ରଶେଖରଙ୍କ ସିଦ୍ଧାନ୍ତ ଦର୍ପଣ କଥା ଜାଣିଗଲେ ଏବଂ ପଢ଼ିବା ପାଇଁ ପୋଥିଟି ତାଙ୍କଠୁଁ ମାଗିନେଲେ । ପୋଥିଟି ପଢ଼ିସାରି ଯୋଗେଶ ବାବୁ ଏକଦମ୍ ଆଶ୍ଚର୍ଯ୍ୟ ହୋଇଗଲେ । ପୃଥିବୀର ବଡ ବଡ ପଣ୍ଡିତମାନେ ଯେଉଁ କାମ କରିବାକୁ ଏବେ ବି ସକ୍ଷମ ହୋଇ ନାହାନ୍ତି; ସେ କାମ ପୁଣି ଗୋଟାଏ ବଣ ମୁଲକର ଲୋକ ନିଜ ଚେଷ୍ଟାରେ କରିପାରିଛି ଜାଣି, ସେ ଏକଦମ୍ ଖୁସି ହୋଇଗଲେ । ପ୍ରକୃତରେ ଯାହାକୁ କହନ୍ତି, ଗୁଣ ଚିହ୍ନେ ଗୁଣିଆ । ଚନ୍ଦ୍ରଶେଖରଙ୍କୁ ସିନା କେହି ଚିହ୍ନିପାରିଲେ ନାହିଁ, ହେଲେ ଯୋଗେଶ ବାବୁ ତାଙ୍କୁ ବେଶ୍ ଚିହ୍ନି ପାରିଥିଲେ ।

## ଆଗରୁ ଗୋଟିଏ ପାଇଥାଆନ୍ତି କି

ଚନ୍ଦ୍ରଶେଖରଙ୍କୁ କିପରି ଅନ୍ୟମାନେ ଜାଣିପାରିବେ; ସେଥିପାଇଁ ଯୋଗେଶ ବାବୁ ଢେର ଚେଷ୍ଟାକଲେ । ଦେଶ ବିଦେଶର ବିଭିନ୍ନ ପତ୍ରପତ୍ରିକାକୁ ସେ ଚନ୍ଦ୍ରଶେଖର ଏବଂ ସିଦ୍ଧାନ୍ତ ଦର୍ପଣ ବିଷୟରେ ଲେଖାମାନ ପଠାଇଲେ । ସେହି ଲେଖାସବୁ ପ୍ରକାଶ ପାଇବାପରେ ଶିକ୍ଷିତ ଲୋକେ ଚନ୍ଦ୍ରଶେଖର ଏବଂ ସିଦ୍ଧାନ୍ତ ଦର୍ପଣ ବିଷୟରେ ଅନେକ କଥା ଜାଣିପାରିଲେ ।

ଯୋଗେଶ ବାବୁଙ୍କ କଥା ସତ କି ମିଛ ଜାଣିବାପାଇଁ ତାଙ୍କର କେତେ ଜଣ ସାଙ୍ଗ ଚନ୍ଦ୍ରଶେଖରଙ୍କୁ ପରୀକ୍ଷା କରିବାକୁ ମନକଲେ । ଚନ୍ଦ୍ରଶେଖର ବି ସେମାନଙ୍କ କଥାରେ ରାଜି ହୋଇଗଲେ । ତେଣୁ ଯୋଗେଶ ବାବୁଙ୍କ ଘରେ ଏ

ପରୀକ୍ଷା ହେବ ବୋଲି ଠିକ୍ ହେଲା । ସମସ୍ତେ ବସିବା ପରେ ଜଣେ ସାଙ୍ଗ ପଚାରିଲେ—ଆଚ୍ଛା ପଣ୍ଡିତ ମହାଶୟ, ବର୍ତ୍ତମାନ ଆକାଶରେ ମଙ୍ଗଳ ଏବଂ ବୁଧଗ୍ରହ ଭିତରେ କେତେ ଦୂରତା ଅଛି କହିପାରିବେ ?

ଚନ୍ଦ୍ରଶେଖର ନିଜ ହାତ ତିଆରି ମାନ ଯନ୍ତ୍ରରେ ଆକାଶକୁ ଚାହିଁଲେ । ଟିକିଏ କଣ ହିସାବ କରିନେଲେ, ତା'ପରେ କହିଲେ—ମଙ୍ଗଳ ଆଉ ବୁଧ ଗ୍ରହ ଏବେ ୬ ଡିଗ୍ରୀ ତଫାତରେ ଅଛନ୍ତି ।

ଯୋଗେଶ ବାବୁଙ୍କ ଘରେ ଦୂରବୀକ୍ଷଣ ଯନ୍ତ୍ରଟିଏ ଥାଏ । ସାଙ୍ଗ ଜଣକ ସେଥିରେ ଆକାଶକୁ ଚାହିଁ ଦେଖିଲେ, ସତକୁ ସତ ମଙ୍ଗଳ ଆଉ ବୁଧଗ୍ରହ ୬ ଡିଗ୍ରୀ ତଫାତରେ ଅଛନ୍ତି । ଏଥର ସମସ୍ତଙ୍କ ମନର ସନ୍ଦେହ ଦୂର ହେଲା । ସେମାନେ ଚନ୍ଦ୍ରଶେଖରଙ୍କୁ ଧନ୍ୟ ଧନ୍ୟ କଲେ ।

ସେଦିନ ଯାଏଁ ବି ଚନ୍ଦ୍ରଶେଖର ଦୂରବୀକ୍ଷଣ ଯନ୍ତ୍ର ଦେଖି ନଥିଲେ । ଏବେ ଯୋଗେଶ ବାବୁଙ୍କ ଘରେ ସେଇଟି ଦେଖିପାରି ମନଦୁଃଖରେ କହିଲେ- ଆଗରୁ ଏଇଥିରୁ ଗୋଟିଏ ପାଇଥାନ୍ତି ! ତାହେଲେ ମୋତେ ଏତେ କଷ୍ଟ ସହିବାକୁ ପଡ଼ ନଥାନ୍ତା ।

## ସଲାମ୍ ସାମନ୍ତ ସଲାମ୍—

ଥରେ ଥିବେଟ୍ ସାହେବ ବୋଲି ଜଣେ ଇଂରେଜ ଲୋକ କଟକ ଆସିଥାନ୍ତି, ଜ୍ଞାନ ଗରିମାରେ ସେ ଖୁବ୍ ପଣ୍ଡିତ । ତେଣୁ ସେ ଗୁଣୀ ଲୋକମାନଙ୍କୁ ଖୁବ ଆଦର କରୁଥାନ୍ତି । ଚନ୍ଦ୍ରଶେଖରଙ୍କ ବିଷୟରେ ଅନେକ କଥା ଜାଣିପାରି, ସେ ତାଙ୍କୁ ଖଣ୍ଡପଡ଼ାରୁ କଟକ ଡକାଇ ଆଣିଲେ ।

କାଠଯୋଡ଼ି ନଈ କୂଳରେ ଗୋଟିଏ ସୁନ୍ଦର ଦୋ ମହଲା କୋଠାଘର । ସେହି ଘରେ ଥିବେଟ୍ ସାହେବଙ୍କ ପାଖରେ ବସି ଯୋଗେଶ ବାବୁ ଏବଂ ଭକ୍ତ କବି ମଧୁସୂଦନ ରାଓ କଥାବାର୍ତ୍ତା ହେଉଥାନ୍ତି । ଏତିକିବେଳେ ଚନ୍ଦ୍ରଶେଖର ସେଠି ପହଞ୍ଚିଲେ । ସାହେବ ଦେଖିଲେ ଯେଉଁ ଲୋକ ଏତେବଡ଼ ପଣ୍ଡିତ ବୋଲି ଭାବିଥିଲେ ହୁଏତ ପଢ଼ି ଯାଇଛି, ତାଙ୍କ ବେଶ ପୋଷାକ ଅତି ସାଧାରଣ । ଚେହେରାଟି ବି ସେମିତି କିଛି ସୁନ୍ଦର ନୁହେଁ ପୁଣି ଇଂରାଜୀ କଥା ଜମା ବୁଝି-ପାରୁନାହାନ୍ତି । ତଥାପି ସେ ଚନ୍ଦ୍ରଶେଖରଙ୍କୁ ଖୁବ୍ ଆଦର କରି ପାଖରେ ନେଇ ବସାଇଲେ । ତାପରେ ଆକାଶ, ଗ୍ରହ, ନକ୍ଷତ୍ର ଆଦି ବିଷୟରେ ଡଜନଟି ପ୍ରଶ୍ନ ତାଙ୍କୁ ପଚାରିଲେ । ସାହେବ ଇଂରାଜୀରେ ପ୍ରଶ୍ନ ପଚାରନ୍ତି ଏବଂ ସେ ପ୍ରଶ୍ନକୁ

ଯୋଗେଶ ବାବୁ ଓଡ଼ିଆରେ ଚନ୍ଦ୍ରଶେଖରଙ୍କୁ ବୁଝାଇ ଦେଉଥାନ୍ତି । ଚନ୍ଦ୍ରଶେଖର ଓଡ଼ିଆରେ ଯେଉଁ ଉତ୍ତର ଦେଉଥାନ୍ତି ତାକୁ ସେ ଇଂରାଜୀରେ ସାହେବଙ୍କୁ ବୁଝାଇ ଦେଉଥାନ୍ତି । ସାହେବଙ୍କର ଚଉଦଟିଯାକ ପ୍ରଶ୍ନର ଠିକ୍ ଠିକ୍ ଉତ୍ତର ଚନ୍ଦ୍ରଶେଖର ଦେଇଦେଲେ । ତେଣୁ ସାହେବ ଏକଦମ୍ ଖୁସି ହୋଇଗଲେ ।

ଏଥର ଚନ୍ଦ୍ରଶେଖର ସାହେବଙ୍କୁ କେତେଟି ପ୍ରଶ୍ନ ପଚାରିଲେ, କିନ୍ତୁ ସାହେବ ଗୋଟିଏ ହେଲେ ପ୍ରଶ୍ନର ଉତ୍ତର ଦେଇ ପାରିଲେ ନାହିଁ । କେବଳ ଗୋଟାଏ ବାହାନା କରି କହିଲେ—"ଗ୍ଲୋବ ନ ଦେଖିଲେ ଏ ସବୁ ପ୍ରଶ୍ନର ଉତ୍ତର ଦେଇପାରିବି ନାହିଁ ।

ଚନ୍ଦ୍ରଶେଖର କହିଲେ—"ଆଜି ନ ହେଲା ନାହିଁ । କାଲିକି ଗ୍ଲୋବ ଦେଖି କହିବେ ।"

ସାହେବ କହିଲେ—"ଗ୍ଲୋବ ପରା ବିଲାତରେ ଅଛି । କାଲିକି କିପରି କହିବି ?"

ଚନ୍ଦ୍ରଶେଖର ଟିକିଏ ହସିଦେଇ କହିଲେ—ମାନ୍ଦ୍ରାଜ ଆଉ କଲିକତାରେ ବି ତ ଗ୍ଲୋବ ଅଛି । ଯଦି ନ କହିପାରିବେ, ତେବେ ମନା କରି ଦିଅନ୍ତୁ । ମିଛ କହୁଛନ୍ତି କାହିଁକି ?

ସାହେବ କ'ଣ ଭାବିଲେ କେଜାଣି; ସାଙ୍ଗେ ସାଙ୍ଗେ ନିଜ ବସିବା ଜାଗାରୁ ଉଠି ଆସିଲେ । ଚନ୍ଦ୍ରଶେଖରଙ୍କ ହାତ ଧରିପକାଇ ହସି ହସି କହିଲେ—ସଲାମ୍....ସଲାମ୍ । ଏକଥା ଦେଖି ଭକ୍ତକବି ଏବଂ ଯୋଗେଶ ବାବୁଙ୍କ ମନ ଆନନ୍ଦରେ କୁଣ୍ଢେ ମୋଟ ହୋଇଯାଇଥିଲା ।

## ମରିଯିବା ପଛେ ଡରିବା ନାହିଁ—

ସେତେବେଳକୁ ପୃଥିବୀର ବଡ ବଡ ପଣ୍ଡିତମାନେ କହି ସାରିଥାନ୍ତି ଯେ, ସୂର୍ଯ୍ୟ ସ୍ଥିର ଅଛି ଏବଂ ପୃଥିବୀ ବୁଲୁଛି । କିନ୍ତୁ ଚନ୍ଦ୍ରଶେଖର ଏଥିରେ ଏକମତ ହୋଇ ପାରୁନଥାନ୍ତି । ସେ କହୁଥାନ୍ତି—ନାଁ ପୃଥିବୀ ସ୍ଥିର ଅଛି । ସୂର୍ଯ୍ୟ ତା ଚାରିପାଖେ ବୁଲୁଛି ।

ଏଇ କଥା ନେଇ ସେଦିନ ୟୁବେଟ୍ ସାହେବ ଚନ୍ଦ୍ରଶେଖରଙ୍କୁ କହିଲେ—ସାମନ୍ତ ଆଜ୍ଞା, ଆପଣଙ୍କର ସବୁ ଗଣନା ତ ଠିକ୍ ତେବେ ଗୋଟାଏ ଭୁଲ କଥା କହୁଛନ୍ତି କିପରି ?

ଚନ୍ଦ୍ରଶେଖର ପଚାରିଲେ—କ'ଣ ଭୁଲ କହିଲିକି ?

ସାହେବ କହିଲେ—ଏଇ ସୂର୍ଯ୍ୟ ବୁଲୁଛି କଥା । ପୃଥିବୀସାରା ସମସ୍ତେ ଜାଣନ୍ତି ଯେ, ସୂର୍ଯ୍ୟ ସ୍ଥିର ଅଛି । ପୃଥିବୀ ବୁଲୁଛି । କିନ୍ତୁ ଆପଣ ଏତେବଡ଼ ପଣ୍ଡିତ ହୋଇ ଏ ଅସମ୍ଭବ କଥାଟା କିପରି କହୁଛନ୍ତି ? ଆପଣ ମତ ବଦଳାଇ ପୃଥିବୀ ବୁଲୁଛି ବୋଲି କହନ୍ତୁ । ତାହେଲେ ସରକାର ଆପଣଙ୍କ ଉପରେ ଖୁସି ହେବେ ।

ଚନ୍ଦ୍ରଶେଖର ନିଜ କଥାରେ ଯୋର ଦେଇ କହିଲେ—ଯେଉଁ କଥାଟା ମୁଁ ଥରେ କହିଦେଇଛି, ମୁଣ୍ଡ କଟିଗଲେ ବି ସେ କଥା ଆଉ ଫେରାଇ ପାରିବି ନାହିଁ । ସରକାର ମୋତେ ମାରନ୍ତୁ କି ରଖନ୍ତୁ; ମୋ କଥାରେ ମୁଁ ଅଟଳ ।

ଚନ୍ଦ୍ରଶେଖରଙ୍କଠୁଁ ଏକଥା ଶୁଣି ସାହେବ ଏକଦମ୍ ଚୁପ୍ ହୋଇଗଲେ । ସେ ମନକୁ ମନ ଭାବୁଥିବେ, ଇଏ ଜାଣ କାଉଁରିଆ କାଠି । ଉଙ୍ଗିଯିବ ପଛେ ନଇଁବ ନାହିଁ ।

## ଧନ୍ୟ ଏ ବାଉଁଶ ନଳୀ—

ଯେତେବେଳକୁ କୁକ୍ ସାହେବ କଟକକୁ କମିସନର ହୋଇ ଆସିଥାନ୍ତି । ଥିବେଟ୍ ସାହେବଙ୍କ ପରି ସେ ବି ଜଣେ ଗୁଣୀ ଲୋକ । ତେଣୁ ଥରେ ସେ ସାମନ୍ତଙ୍କୁ ନିଜ କୋଠିକି ଡକାଇ ପଠାଇଲେ । ସାମନ୍ତ ପହଞ୍ଚିବାରୁ ତାଙ୍କୁ ଖୁବ୍ ଆଦର କଲେ । ଅନେକ ବେଳଯାଏଁ ତାଙ୍କ ସାଙ୍ଗେ କଥାବାର୍ତ୍ତା ହେଲେ ।

ସାହେବଙ୍କ କୋଠି ପଛପଟେ ମହାନଦୀ, ମହାନଦୀ ଆରପାଖେ ଅନେକ ଦୂରରେ 'ସପ୍ତଶଯ୍ୟା' ପାହାଡ଼ । ସାହେବ ଝରକା ବାଟେ ସାମନ୍ତଙ୍କୁ ସେଇ ପାହାଡ଼ଟି ଦେଖାଇଦେଇ ପଚାରିଲେ—ଆପଣ ଏଇ ଘରେ ବସି ସେ ପାହାଡ଼ର ଉଚ୍ଚତା ଗଣନା କରି କହିପାରିବେ ?

ସାମନ୍ତ ଟିକଏ ହସିଦେଲେ । ତାପରେ ସାଙ୍ଗରେ ନେଇଥିବା ବାଉଁଶ ନଳୀର ମାନ ଯନ୍ତ୍ରଟି ବାହାର କରି ସେଥିରେ ପାହାଡ଼କୁ ଚାହିଁଲେ । ତାପରେ କ'ଣ ଟିକେ ହିସାବ କରି ଦେଇ କହିଲେ—ଆଜ୍ଞା, ପାହାଡ଼ର ଉଚ୍ଚତା ହେଉଛି ୧୧୨୮ ହାତ ୧୬ ଆଙ୍ଗୁଳ ବା ୧୬୬୮ ଫୁଟ ।

ସାହେବ ସାଙ୍ଗେ ସାଙ୍ଗେ ପାଖ ଘରକୁ ଯାଇ ମାନଚିତ୍ରରେ ଦେଖିଲେ, ପ୍ରକୃତରେ ସାମନ୍ତଙ୍କ ହିସାବ ଠିକ୍ । ତେଣୁ ସେ ଖୁସିରେ ଧାଇଁଆସି ସାମନ୍ତଙ୍କୁ କୁଣ୍ଢାଇ ପକାଇଲେ । ଯେଉଁ ବାଉଁଶ ନଳୀ ଦିଖଣ୍ଡରେ ସାମନ୍ତ ଏତେ ବଡ଼ ବଡ଼

ଗଣନା କରି ପାରୁଛନ୍ତି; ତାକୁ ସେ ଥରକୁ ଥର ନେଇ ମୁଣ୍ଡରେ ଲଗାଉଥାନ୍ତି ଏବଂ କହୁଥାନ୍ତି—"ଧନ୍ୟ ଏ ବାଉଁଶ ନଳୀ ।"

## ସେହୁ ପାଞ୍ଚଇ ପରମନ୍ଦ—

ସାମନ୍ତଙ୍କ ଜ୍ଞାନଗରିମା ଜାଣିଗଲା ପରେ କୁକ୍ ସାହେବ ମନେ ମନେ ଭାବିଲେ; ଏତେବଡ ପଣ୍ଡିତଙ୍କୁ ସରକାରଙ୍କ ତରଫରୁ ଗୋଟାଏ ଉପାଧି ମିଳିବା ଦରକାର । ତେଣୁ ସେ ସାମନ୍ତଙ୍କ ବିଷୟରେ ସବୁକଥା ଲେଖି ସରକାରଙ୍କୁ ଜଣାଇଦେଲେ ଏବଂ ଉପାଧିଟିଏ ଦେବାକୁ ଅନୁରୋଧ କଲେ । ସରକାର ଷ କମିଶନର ସାହେବଙ୍କ କଥାରେ ରାଜି ହୋଇଗଲେ ।

କଟକ ବାରବାଟୀ ଗଡଠାରେ ଗୋଟିଏ ସଭା ବସିବ ଏବଂ ସେଇ ସଭାରେ ସାମନ୍ତଙ୍କୁ ଉପାଧି ଏବଂ ସନନ୍ଦ ଦିଆଯିବ ବୋଲି ଠିକ୍ ହେଲା । କେତେ ରଜା, ମହାରଜା, ଗୁଣୀ, ପଣ୍ଡିତ ଆଦି ଲୋକଙ୍କୁ ସଭାକୁ ନିମନ୍ତ୍ରଣ କରାଗଲା ।

ଖଣ୍ଡପଡା ରଜା ନଟବର ତ ସାମନ୍ତଙ୍କୁ ଦେଖି ସହି ପାରୁ ନଥିଲେ, ଏବେ ଯେମିତି ଉପାଧି ପାଇବା କଥା ଶୁଣିଛନ୍ତି, ଖାଲି ହିଂସାରେ ଜଳିଗଲେ । ସାମନ୍ତ କପରି ଉପାଧି ଆଣିବାକୁ କଟକ ଯାଇ ନ ପାରିବେ, ସେଥିପାଇଁ ନାନା ଫନ୍ଦି ଫିକର ବାହାର କଲେ ।

ସାମନ୍ତ ଏବେ ମହା ଅଡୁଆରେ ପଡିଲେ । କଥା ନ ମାନି କଟକ ଗଲେ ରଜା ତାଙ୍କ ଉପରେ ଦାଉ ସାଧିବେ । ନଗଲେ କମିଶନର ତାଙ୍କୁ ଫତୁଲିଆ ବୋଲି ଭାବିବେ । ଏଇ କଥା ସେ ତାଙ୍କର ଜଣେ ଶିଷ୍ୟଙ୍କୁ କହି-ଦେଲେ । ଶିଷ୍ୟ ଜଣକ କମିଶନର ସାହେବଙ୍କୁ ସବୁକଥା ଜଣାଇ ଚିଠି ଲେଖିଲେ । ଚିଠିପାଇ କମିଶନର ସାହେବ ସବୁକଥା ବୁଝିପାରିଲେ । ତାପରେ ସେ ସାଙ୍ଗେ ସାଙ୍ଗେ ରଜାଙ୍କ ନାଁରେ ହୁଲିଆ ଜାରି କରିଦେଲେ । ମାନେ ରଜାଙ୍କୁ ଯୋଉଠି ପାଇବ, ବାନ୍ଧି ଆଣିବ । ହୁଲିଆ ଜାରି କଥା ଶୁଣି ରଜା ଏକଦମ୍ ଭୟରେ ଛାନିଆ । ସେ ସାମନ୍ତଙ୍କୁ ଅଟକାଇ ରଖିବେ କ'ଣ, ଓଲଟି ତାଙ୍କ ଯିବାପାଇଁ ସବୁ ବନ୍ଦୋବସ୍ତ କରିଦେଲେ ।

## ମୋର ଉପାଧି ଲୋଡାନାହିଁ—

ସାମନ୍ତ କଟକରେ ପହଞ୍ଚିଲେ । ତାପରେ କମିଶନର ସାହେବଙ୍କୁ ଦେଖାକରି କହିଲେ ..."ଆପଣ କୁଆଡେ ଆମ ରଜାଙ୍କ ନାଁରେ ହୁଲିଆ ଜାରି

କରିଛନ୍ତି ? ମୋର ଅନୁରୋଧ ତାଙ୍କୁ କ୍ଷମା ଦିଅନ୍ତୁ ।

ସାହେବ କହିଲେ—ସେ ଆପଣଙ୍କୁ କଟକ ଛାଡ଼ ନ ଦେବାପାଇଁ ଫନ୍ଦିଫିକର କରୁଥିଲା ପର ; ତେଣୁ ସେ ତ ଦଣ୍ଡ ପାଇବା ଉଚିତ ।

ସାମନ୍ତ କହିଲେ—ଯେତେ ଯାହାକଲେ ବି ସେ ରାଜା ହେଉଛନ୍ତି ମୋ ପ୍ରଭୁ । ମୁଁ ସରକାରଙ୍କ ତରଫରୁ ଉପାଧି ପାଉଥିଲାବେଳେ ମୋ ପ୍ରଭୁ ଜେଲରେ ଥାଇ ଆଖିରୁ ଲୁହ ପୋଛୁଥିବ, ଏଇଟା କ'ଣ ଭଲହେବ ? ଯଦି ଆପଣ ତାଙ୍କୁ କ୍ଷମା ନ କରିବେ, ତେବେ ମୋର ଉପାଧି ଲୋଡ଼ାନାହିଁ । ନିଜ ଲୋକଙ୍କ ମୁହଁରେ କାଳିବୋଳି ମୁଁ ବଡ଼ହେବାକୁ ଚାହୁଁ ନ । ମୋତେ କ୍ଷମା କରନ୍ତୁ ।

ଏକଥା ଶୁଣି ଖାଲି ସାହେବ କାହିଁକି, ଆଉ ଯେଉଁମାନେ ସେଠି ଥିଲେ, ସମସ୍ତେ ସାମନ୍ତଙ୍କୁ ଧନ୍ୟ ଧନ୍ୟ କଲେ । ସେମାନେ କୁହାକୁହି ହେଲେ—ଏ ଲୋକକୁ ଧନ୍ୟ କହିବା । ଯେଉଁ ଲୋକ ଯାଙ୍କୁ ଏତେ ହଇରାଣ ହରକତ କଲା, ଆଉ କିଏ ହୋଇଥିଲେ ତ ମୁହଁକୁ ଚାହିଁବାକୁ ବି ମନାକରି ଦେଇଥାନ୍ତା । ହେଲେ ଯାଙ୍କର ଟିକିଏ ବି ରାଗନାହିଁ ।

## ମହାମହୋପାଧ୍ୟାୟ—

ଉପାଧି ପାଇଲା ଦିନ ବାରବାଟୀ ପଡ଼ିଆରେ ଏତେ ଲୋକ ଗହଳି ହୋଇଥାଏ ଯେ, କହି ହେବନି । ସେଇ ସଭାରେ ସରକାରଙ୍କ ତରଫରୁ ସାମନ୍ତଙ୍କୁ 'ମହାମହୋପାଧ୍ୟାୟ' ଉପାଧି ଦିଆଗଲା । ଏ ଉପାଧି କେବଳ ଖୁବ୍ ଜ୍ଞାନୀ ଏବଂ ପଣ୍ଡିତ ଲୋକଙ୍କୁ ମିଳିଥାଏ । ସାମନ୍ତଙ୍କ ଆଗରୁ ଆଉ କେହି ଓଡ଼ିଆ ଲୋକ ଏ ଉପାଧି ପାଇ ନଥିଲେ । ତେଣୁ ମହାମହୋପାଧ୍ୟାୟ ଉପାଧି ପାଇବାରେ ଚନ୍ଦ୍ରଶେଖର ହେଉଛନ୍ତି ପ୍ରଥମ ଓଡ଼ିଆ ।

ଉପାଧି ପାଇଲା ପରେ ସାମନ୍ତଙ୍କ ପୁରା ନାଁ ହେଲା—"ମହାମହୋପାଧ୍ୟାୟ ସାମନ୍ତ ଶ୍ରୀ ଚନ୍ଦ୍ରଶେଖର ହରିଚନ୍ଦନ ମହାପାତ୍ର । ସାମନ୍ତ ତାଙ୍କ ରାଜବଂଶର ଉପାଧି; କିନ୍ତୁ ହରିଚନ୍ଦନ ମହାପାତ୍ର ଉପାଧିଟି ସେ ପୁରୀ ଗଜପତି ରାଜାଙ୍କଠାରୁ ପାଇଥିଲେ ।

ସଭାକୁ ନିମନ୍ତ୍ରଣ ପାଇ ଆସିଥିବା ଦେଶ ବିଦେଶର ଜ୍ଞାନୀ, ପଣ୍ଡିତ ଏବଂ ରାଜା ମହାରାଜାମାନେ ସାମନ୍ତଙ୍କ ଗୁଣ ଗାରିମା ଜାଣିଗଲେ । ତାଙ୍କ ପରି ଜଣେ ଗୁଣୀଲୋକଙ୍କ ଦେଖାପାଇ ଥିବାରୁ ସେମାନେ ନିଜକୁ ଧନ୍ୟ ମନେକଲେ ।

## ଆପଣ ପରା ଉତ୍କଳର ଚନ୍ଦ୍ରମା—

ମଧୁ ବାବୁ ସେତେବେଳେ ଓଡ଼ିଶାରେ ଜଣେ ଖୁବ୍ ନାମଜାଦା ଲୋକ । ସେ ଏମିତି ଟାଣରେ କଥା କହୁଥିଲେ ଯେ, ବେଳେବେଳେ ଇଂରେଜ ସରକାର ବି ତାଙ୍କ କଥାରେ ଦବି ଯାଉଥିଲେ । ସେଇ ମଧୁ ବାବୁଙ୍କୁ ସମ୍ମାନ ଦେଖାଇବା ପାଇଁ ଖଣ୍ଡପଡା ଗଡା ଗୋଟିଏ ସଭା ଯୋଗାଡ଼ କରିଥାନ୍ତି । ସଭାକୁ ଅନେକ ବଡ଼ ପଣ୍ଡିତଙ୍କୁ ନିମନ୍ତ୍ରଣ କରାଯାଇଥାଏ । ସେମାନଙ୍କ ଭିତରେ ଚନ୍ଦ୍ରଶେଖର ବି ଥାନ୍ତି ।

ସଭା ଆରମ୍ଭ ହେଲା । ପଣ୍ଡିତମାନେ ମଧୁ ବାବୁଙ୍କୁ ପ୍ରଶଂସା କରି ଶ୍ଳୋକମାନ ପଢ଼ିଲେ । କିନ୍ତୁ ମଧୁ ବାବୁ ଏଥିରେ ଖୁସିହେବେ କ'ଣ ଓଲଟି ପଣ୍ଡିତମାନଙ୍କୁ ନିନ୍ଦା କରିବାରେ ଲାଗିଲେ । ପଣ୍ଡିତମାନେ କପରି ବୋକା, ସେଇକଥା ଶୁଣାଇବାକୁ ଯାଇ ସେ କହିଲେ—"ଜଣେ ପଣ୍ଡିତ ଥାନ୍ତି । ଦିନେ ତାଙ୍କ ସ୍ତ୍ରୀ ଚୁଲି ଉପରେ ଡାଲି ହାଣ୍ଡିଟା ବସାଇଦେଇ ଘର ଭିତରକୁ କ'ଣ କାମରେ ଚାଲିଗଲେ । ଯିବାବେଳେ ପଣ୍ଡିତଙ୍କୁ କହିଲେ, ଡାଲି କାଳେ ଉତୁରି ପଡ଼ିବ ; ତେଣୁ ଟିକେ ନଜର ରଖିଥାଅ ।"

ସତକୁ ସତ ଟିକକ ପରେ ଡାଲି ଉତୁରି ଆସିଲା । ତେଣୁ ପଣ୍ଡିତେ ଘାରି ବ୍ୟସ୍ତ ହୋଇ ପଡ଼ିଲେ । କାରଣ ଡାଲି ଉତୁରା କେମିତି ବନ୍ଦ ହେବ, ତାଙ୍କୁ ଜଣା ନଥିଲା । ସେ ଚୁଲିପାଖେ ବସି ଖୁବ୍ ବଡ଼ ପାଟିରେ ଚଣ୍ଡୀପାଠ ଆରମ୍ଭ କରିଦେଲେ । ପାଟି ଶୁଣି ତାଙ୍କ ସ୍ତ୍ରୀ ଦଉଡ଼ି ଆସି ଦେଖନ୍ତି ତ, ଡାଲି ଉତୁରି ଚୁଲିରେ ପଶିଯାଉଛି । ତେଣୁ ସେ ପାଣି ମୁଠାଏ ନେଇ ଡାଲି ହାଣ୍ଡିରେ ପକାଇ ଦେଲେ, ସାଙ୍ଗେ ସାଙ୍ଗେ ଡାଲି ଉତୁରା ବନ୍ଦ୍ ହୋଇଗଲା । ଏକଥା ଦେଖି ପଣ୍ଡିତେ ଏକଦମ୍ କାବା । ସେ ସ୍ତ୍ରୀଙ୍କୁ ପଚାରିଲେ ମୁଁ ଏତେ ଚଣ୍ଡୀପାଠ କଲି, ଡାଲି ଉତୁରା ବନ୍ଦ୍ ହେଲାନି । ହେଲେ ତୁ କି ମନ୍ତ୍ର ପଢ଼ି ପାଣି ମୁଠେ ପକାଇ ଦେଲୁ ଯେ ଉତୁରାଟା ସାଙ୍ଗେ ସାଙ୍ଗେ ବନ୍ଦ ହୋଇଗଲା ।

ଏଇଥିରୁ ଜାଣୁଥିବେ, ପଣ୍ଡିତମାନେ ସିନା ପାଠରେ ବେଶ୍ ଟାଣ, ହେଲେ ବୁଦ୍ଧି ବୃତ୍ତିରେ ଏକଦମ୍ ଊଣା ।

ମଧୁ ବାବୁଙ୍କ ମୁହଁରୁ ଏକଥା ଶୁଣି ପଣ୍ଡିତମାନେ ଲାଜରେ ମୁଣ୍ଡ ପୋତି ଦେଲେ । କଥାରେ ଅଛି, ବଡ଼ ଲୋକଙ୍କୁ ଉତ୍ତର ନାହିଁ । ତେଣୁ ମଧୁ ବାବୁଙ୍କ ପରି ଲୋକଙ୍କୁ କିଏ ବା ଜବାବ ଦିଅନ୍ତା । ତେଣୁ ସମସ୍ତେ ଚୁପ୍‌ଚାପ୍ ବସିଲେ, କିନ୍ତୁ ପଣ୍ଡିତମାନଙ୍କର ନିନ୍ଦା ସାମନ୍ତ ସହିପାରିଲେ ନାହିଁ । ସେ ସାଙ୍ଗେ ସାଙ୍ଗେ ଠିଆ

ହୋଇ ଗୋଟିଏ ଶ୍ଳୋକ ପଢ଼ିଲେ । ସେ ଶ୍ଳୋକଟିର ଅର୍ଥ ହେଲା—ଯେଉଁ ହୀରା ପଥର ଓ ଲୁହାକୁ ବି ପାଣି ଫଟାଇ ଦିଏ, ବେଳ ପଡ଼ିଲେ ସେ ପୁଣି ମେଣ୍ଢା ଶିଙ୍ଗରେ ଭଙ୍ଗିଯାଏ । ସେମିତି ଯେଉଁମାନେ ନିଜକୁ ଅତି ବୁଦ୍ଧିଆ ବୋଲି ଭାବନ୍ତି; ବେଳ ପଡ଼ିଲେ ଗଡ଼ ମୂର୍ଖଙ୍କ ପାଖରେ ବି ହାରିମାନନ୍ତି ।

ସାମନ୍ତଙ୍କଠୁଁ ଏକଥା ଶୁଣି ମଧୁ ବାବୁଙ୍କ ମୁହଁ ଲାଜରେ କଳାପଡ଼ିଗଲା । କଥାଟା ଏପରି ହେବ ବୋଲି ସେ ଜମା ଭାବି ନଥିଲେ । ତେଣୁ ସେ ଆରଦିନ ସାମନ୍ତଙ୍କ ପାଖକୁ ଯାଇ, ଖୁବ୍ ବିନୟରେ କହିଲେ—ଆଜ୍ଞା, କାଲି ସଭାରେ ମୁଁ ଯାହା କହିଲି, ସେଥିରେ ଆପଣ ନିଶ୍ଚେ ମନ ଦୁଃଖ କରିଥିବେ । ସେତେବେଳେ ମୁଁ ଗୋଟାଏ ମକଦ୍ଦମା କଥା ଭାବୁଥିଲି । ତେଣୁ କ'ଣ ଯେ କହିଦେଲି, ମୋର ହୋସ୍ ରହିଲାନି । ତେଣୁ ମୋତେ କ୍ଷମା କରନ୍ତୁ ।"

ସାମନ୍ତ ବି ସେତେବେଳକୁ ସବୁକଥା ଭୁଲି ଯାଇଥାନ୍ତି । ତେଣୁ ସେ ଟିକିଏ ହସିଦେଇ ଥଟ୍ଟାରେ କହିଲେ—ମାଲିମକଦ୍ଦମା ଛଡ଼ା, ଆପଣଙ୍କ ମୁଣ୍ଡରେ ଆଉ କି ଚିନ୍ତା ଥାଏ କି ? ସବୁବେଳେ ତ ଆପଣଙ୍କର ଖାଲି ଧନଚିନ୍ତା ।

ମଧୁ ବାବୁ ବି ହସିଦେଇ କହିଲେ—ଆପଣ ପରା ଉତ୍କଳର ଚନ୍ଦ୍ରମା । ମୁଁ କ'ଣ ଆପଣଙ୍କୁ କଥାରେ ପାରିବି ?

## ପୃଥିବୀବିଖ୍ୟାତ ହୋଇଗଲେ—

ସେତେବେଳକୁ ସାମନ୍ତଙ୍କୁ ଚଉଷଠି ବର୍ଷ । ଯାହାକୁ କହନ୍ତି ନିପଟ ବୁଢ଼ା । ସିଦ୍ଧାନ୍ତ ଦର୍ପଣ କିପରି ଛପା ହୋଇ ବହି ଆକାରରେ ବାହାରିବ, ସେଥିପାଇଁ ଯୋଗେଶ ବାବୁ ଭାରି ବ୍ୟସ୍ତ ହେଉଥାନ୍ତି । ହେଲେ ବହି ଛାପିବା ପାଇଁ ତ ପୁଣି ଟଙ୍କା ଦରକାର । ଆଠମଲ୍ଲିକ ରଜା ସିଦ୍ଧାନ୍ତ ଦର୍ପଣ ଛପା ହେବା କଥା ଶୁଣି ଖୁସିରେ ବାର ଶହ ଟଙ୍କା ଦେଲେ । ଯାହା ହଉ, ସେତକ ଟଙ୍କାରେ ସିଦ୍ଧାନ୍ତ ଦର୍ପଣ ଛପା ହୋଇଗଲା । ତିନି ଶହ ପଚିଶ ପୃଷ୍ଠାର ଏହି ବହିଟିରେ ଆକାଶ, ଗ୍ରହ, ନକ୍ଷତ୍ର ଆଦି ବିଷୟରେ ମୋଟ ପଚିଶ ହଜାର ଶ୍ଳୋକ ରହିଥିଲା ।

ସିଦ୍ଧାନ୍ତ ଦର୍ପଣ ଛପା ସରିବା ପରେ ଯୋଗେଶ ବାବୁ ସେଥିରୁ ଖଣ୍ଡିଏ ଲେଖାଏଁ ବିଲାତ ପ୍ରଭୃତି ଦେଶର ବଡ଼ ବଡ଼ ପଣ୍ଡିତମାନଙ୍କ ପାଖକୁ ପଠାଇଲେ । ସେମାନେ ବହିଟି ପଢ଼ି ଚନ୍ଦ୍ରଶେଖରଙ୍କୁ ଜ୍ଞାନ ପ୍ରଶଂସାରେ ପୋତି ପକାଇଲେ । ସେତେବେଳେ ବିଲାତରୁ 'ନେଚର' ବା 'ପ୍ରକୃତି' ବୋଲି ଗୋଟିଏ ଇଂରାଜୀ ପତ୍ରିକା ବାହାରୁଥାଏ । ସେ ପତ୍ରିକାରେ ମଧ୍ୟ ଚନ୍ଦ୍ରଶେଖରଙ୍କ ବିଷୟରେ

ଅନେକ କଥା ପ୍ରକାଶ ପାଇଲା । ସିଦ୍ଧାନ୍ତ ଦର୍ପଣ ଯୋଗୁଁ ଚନ୍ଦ୍ରଶେଖର ପୃଥିବୀ ବିଖ୍ୟାତ ହୋଇଗଲେ ।

## ସରକାର ବୃତ୍ତି ଖଞ୍ଜିଦେଲେ—

ସାମନ୍ତଙ୍କୁ ସିନା ସାରା ପୃଥିବୀ ଲୋକେ ଜାଣିଲେ, ହେଲେ ତାଙ୍କ ଘରର ଅବସ୍ଥା କହିଲେ ନସରେ । ଦିନକୁ ଦିନ ତାଙ୍କର ଅଭାବ ବଢ଼ିବାରେ ଲାଗିଥାଏ । ଯେଉଁ ଗାଁତକ ସେ ଜାଗିରି ପାଇଥିଲେ, ସେତକ ରଜା ନଟବର ତାଙ୍କଠୁ ଛଡ଼ାଇ ନେଇଥାନ୍ତି । କେବଳ ସେ ଯେଉଁ ପାଞ୍ଜି ଲେଖିଥିଲେ, ସେଇଥିରୁ ବର୍ଷକୁ ମାତ୍ର ତିନି ଶହ ଟଙ୍କା ପାଉଥାନ୍ତି । ହେଲେ ସେତକ ତାଙ୍କ ସମୁଦ୍ରକୁ ଶଙ୍ଖେ ପାଣି ପରି । ତେଣୁ ଭରି ଦୁଃଖ କଷ୍ଟରେ ତାଙ୍କ ଦିନ କଟୁଥାଏ । ଏକଥା ଜାଣିପାରି କମିଶନର ସାହେବ, ସରକାରଙ୍କ ତରଫରୁ ତାଙ୍କପାଇଁ ମାସକୁ ପଚାଶ ଟଙ୍କା ଲେଖାଏଁ ବୃତ୍ତି ଖଞ୍ଜିଦେଲେ । ଏଇ ବୃତ୍ତି ଟଙ୍କା ପାଇବାରୁ, ତାଙ୍କ ଅଭାବ ଜାଣ କମିଗଲା । ଆଉ ପେଟ ଚିନ୍ତା କରିବାକୁ ପଡ଼ିଲାନ ।

## ଆଜିଠୁଁ ଚଉଦ କୋଶ ଛାଡ଼ିଲି—

ସେତେବେଳକୁ ସାମନ୍ତଙ୍କୁ ଅଣସ୍ତୁରୀ ବର୍ଷ । ସେ ଗଣନାକରି ଜାଣି-ପାରିଲେ ଯେ; ତାଙ୍କ ବେଳକାଳ ସରି ଆସିଲାଣି । ଗଛର ପାଚିଲା ପତ୍ର ପରି ଆଉ ଦିନ କେଇଟାରେ ଝଡ଼ ପଡ଼ିବେ । ତେଣୁ ସେ ଶ୍ରୀକ୍ଷେତ୍ରକୁ ଯିବାକୁ ମନ-କଲେ । ଯିବା ଆଗରୁ ରଜା ନଟବରଙ୍କ ପାଖକୁ ଯାଇ କହିଲେ —"ଆଜିଠୁଁ ଚଉଦ କୋଶ ଛାଡୁଛି । ଆଉ ଦିନ କେଇଟା ପରେ ଚଉଦ ପା'ବ ଛାଡ଼ିବି । ତେଣୁ ପଛ କଥା ସବୁ ମନରୁ ଭୁଲିଯିବ ।"

ରଜା କିନ୍ତୁ ସାମନ୍ତଙ୍କ କଥାର ଅର୍ଥ କିଛି ବୁଝି ପାରିଲେ ନାହିଁ । ତେଣୁ ଜଣେ ପଣ୍ଡିତଙ୍କୁ, ସାମନ୍ତଙ୍କ କଥାର ଅର୍ଥ ପଚାରିଲେ ।

ପଣ୍ଡିତ କହିଲେ—ପୁରୀ ଏଠିକି ଚଉଦ କୋଶ ଅର୍ଥାତ ୨୮ମାଇଲ ଦୂର ବୋଲି ସେ ଚଉଦ କୋଶ ଛାଡ଼ିବା କଥା କହିଲେ । ମଣିଷ ନିଜ ହାତରେ ଚଉଦପା' ଲମ୍ବ । ସେ ଚଉଦପା' ଛାଡ଼ିବେ ଅର୍ଥ ଅଳ୍ପଦିନରେ ଆଉପାରିକି ଚାଲିଯିବେ । ରଜାଙ୍କ ପାଖରୁ ଫେରି ସାମନ୍ତ ଘରେ ସମସ୍ତଙ୍କୁ ବୁଝାବୁଝି କରି କହିଲେ । ତାପରେ ମଝିଆଁ ପୁଅ ଗଦାଧରଙ୍କୁ ସାଙ୍ଗରେ ନେଇ ପୁରୀ ବାହାରି ପଡ଼ିଲେ ।

## ପ୍ରଭୁ; ଏଇ ମୋର ଶେଷ ଦେଖା—

ପୁରୀରେ ପହଞ୍ଚିଲା ପରେ ସାମନ୍ତ ଶ୍ରୀମନ୍ଦିରକୁ ଯାଇ ଜଗନ୍ନାଥଙ୍କୁ ଦର୍ଶନ କଲେ । ତାପରେ ଠାକୁରଙ୍କ ଆଗରେ ହାତଯୋଡ଼ ଠିଆହୋଇ କହିଲେ—'ପ୍ରଭୁ, ଏ ଜୀବନରେ ଏଇ ମୋର ଶେଷ ଦେଖା ।' ଏତିକି କହି ସେ ବସାକୁ ଫେରି ଆସିଲେ ।

ସେଦିନ ବସାରେ ପହଞ୍ଚିବାପରେ ତାଙ୍କୁ ଜର ହେଲା । ଗଦାଧର ବାପାଙ୍କ ପାଖେ ପାଖେ ରହି ତାଙ୍କର ସେବା କରୁଥାନ୍ତି । ହେଲେ ଜରଟା ଦିନକୁ ଦିନ ବଢ଼ିଲା ପଛେ କମିଲାନି ।

ସେଦିନ ୧୯୦୪ ମସିହା ଜୁନ୍ ମାସ ୧୦ ତାରିଖ । ଶନିବାର । ସାମନ୍ତ ଗଦାଧରଙ୍କୁ କହିଲେ—ବାପା, ମୋତେ ଟିକେ ଗାଧୋଇ ଦିଅ ।

ଗଦାଧର କହିଲେ—ଆପଣଙ୍କ ଦେହରେ ପରା ଜର ଭର୍ତ୍ତି ହୋଇଛି । ଗାଧୋଇବେ କିପରି ?

ସାମନ୍ତ କହିଲେ—ଆଜି ପରା ମୋର ଶେଷଦିନ । ତେଣୁ ତୁମେ ଡରୁଛ କାହିଁକି ? ମୁଁ ଅଗାଧୁଆ ରହି ମରିବି, ଏଇଟା କ'ଣ ଭଲ ହେବ ?

ଗଦାଧର ବା ଆଉ କ'ଣ କରିବେ ? ବାଧ୍ୟ ହୋଇ ସେ ସାମନ୍ତଙ୍କୁ ତୁଳସୀ ଚଉରା ମୂଳେ ଗାଧୋଇଦେଲେ । ମୁଣ୍ଡରେ ଦେଲେ ଉଳକ ଟିକା ଆଉ ବେକରେ ପିନ୍ଧାଇଦେଲେ ତୁଳସୀମାଳି ।

ସାମନ୍ତ ଧୀରେ ଧୀରେ 'ଜଗନ୍ନାଥ' 'ଜଗନ୍ନାଥ' ବୋଲି କହୁଥାନ୍ତି । ଟିକକ ପରେ ତାଙ୍କ ପ୍ରାଣବାୟୁ ଉଡ଼ିଗଲା । ସେ ଢଳିପଡ଼ିଲେ ।

ଉତ୍କଳର ଚନ୍ଦ୍ରମା ସାମନ୍ତ ଚନ୍ଦ୍ରଶେଖର ସବୁଦିନ ପାଇଁ ହଜିଗଲେ ।

## ତାଙ୍କ ସ୍ମୃତିରକ୍ଷା ପାଇଁ—

ସାମନ୍ତ ସିନା କୋଉ କାଳୁ ଗଲେଣି; ହେଲେ ତାଙ୍କ ଲେଖା 'ସିଦ୍ଧାନ୍ତ-ଦର୍ପଣ' ଏବେ ବି ଦେଶ ବିଦେଶରେ ଆଦର ପାଉଛି । ସେଇଥିପାଇଁ କବିବର ରାଧାନାଥ ରାୟ ଲେଖିଥିଲେ—

"ସିଦ୍ଧାନ୍ତ ଦର୍ପଣ ହେବନାହିଁ ଲୟ,
ନ ଥିବ ଦେହେ ଥିବ ଯାବତ ହୃଦୟ ।"

ତାଙ୍କର ସ୍ମୃତିରକ୍ଷା ପାଇଁ ଏବେ ଶ୍ରୀକ୍ଷେତ୍ର ପୁରୀରେ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ ମୁଣ୍ଡ ଟେକି ଠିଆ ହୋଇଛି ।



# ବିଶ୍ୱବିଚିତ୍ରା

## ସୂର୍ଯ୍ୟର ବୟସ—

ଫରାସୀ ଜ୍ୟୋତିର୍ବିଦ୍ ଏଭ୍ରି ସ୍କାନ୍ତମ୍ୟାନ୍ ଏବଂ ସୁଇଜରଲ୍ୟାଣ୍ଡର ଜ୍ୟୋତିର୍ବିଦ୍ ଆନ୍ଦ୍ରେ ମେଡରଙ୍କ ମତାନୁସାରେ ମହାକାଶରେ ସୂର୍ଯ୍ୟ ଆହୁରି ୧୫ ଶହ କୋଟି ବର୍ଷଯାଏଁ ଜ୍ୱଳନ୍ତ ଅବସ୍ଥାରେ ତିଷ୍ଠି ରହିବ । ଏ ପର୍ଯ୍ୟନ୍ତ ବୈଜ୍ଞାନିକମାନେ ଋଣ୍ଗାଣ୍ଡ କରୁଥିଲେ ଯେ, ସୂର୍ଯ୍ୟ ମହାକାଶରେ ଆଉ ୮ଶହ କୋଟି ବର୍ଷ ରହିବାପରେ ତାର ମୃତ୍ୟୁ ହେବ ।

ସେମାନଙ୍କ ମତରେ ତାରକାସ୍ଥିତ ଉଦ୍‌ଜାନ ଅଣୁଗୁଡ଼ିକ, ବୈଜ୍ଞାନିକ ପ୍ରକ୍ରିୟା ଫଳରେ ହିଲିୟମରେ ପରିଣତ ହୁଅନ୍ତି ଏବଂ ଏହି ହିଲିୟମ ଅଣୁଗୁଡ଼ିକ ଲିଥିୟମ୍, ବେରିଲିୟମ୍ ଆଦି ଉଚ୍ଚ ମୌଳିକ ଧାତୁରେ ପରିଣତ ହୋଇଥାନ୍ତି । ଏହି ପ୍ରକ୍ରିୟାଗୁଡ଼ିକ ଯୋଗୁଁ ସୂର୍ଯ୍ୟ ଏକ ଜ୍ୱଳନ୍ତ ପିଣ୍ଡରେ ପରିଣତ ହୋଇଛି ।

ସୂର୍ଯ୍ୟର ଅଭ୍ୟନ୍ତରରେ ଆଲୋଡ଼ନ ହେତୁ, ସର୍ବଦା ଉଦ୍‌ଜାନ ବସ୍ତୁର ଉଦ୍ଭବ ହେଉଛି ଓ ଆଣବିକ ପ୍ରକ୍ରିୟାରୁ ଉଦ୍ଭବ ଉଦ୍‌ଜାନ ଜଳିବାରେ ଲାଗିଛି । ଏହି ପ୍ରକ୍ରିୟା ପ୍ରାୟ ପାଞ୍ଚ ଶହ କୋଟି ବର୍ଷ ହେଲା ଅବିରାମ ଗତିରେ ଚାଲି ଆସିଛି ଏବଂ ଆହୁରି ଶହଶହ କୋଟି ବର୍ଷ ଚାଲିବ ବୋଲି ବିଶ୍ୱାସ କରାଯାଉଛି । ତେଣୁ ସୂର୍ଯ୍ୟର ଆୟୁଷ ଢେର ବେଶୀ ।

## ସୂର୍ଯ୍ୟରେ ବିସ୍ଫୋରଣ—

ସୂର୍ଯ୍ୟର ଉପରି ସ୍ତରରେ ଅବିରତ ଘଟୁଥିବା ରାସାୟନିକ ପ୍ରକ୍ରିୟା ଫଳରେ ୧୯୭୨ ମସିହା ଗ୍ରୀଷ୍ମକାଳରେ ଏଥିରେ ଏକ ବିସ୍ଫୋରଣ ଘଟିଯାଇଛି ବୋଲି ଋଷ ବୈଜ୍ଞାନିକମାନେ ମତ ପ୍ରକାଶ କରିଛନ୍ତି ।

ପ୍ରତି ୧୧ ବର୍ଷରେ ଥରେ ସୂର୍ଯ୍ୟ ଦେହରେ ଏହିପରି ବିସ୍ଫୋରଣ ଘଟି ସୌରକଳଙ୍କ ଅର୍ଥାତ୍ ସୂର୍ଯ୍ୟ ଦେହରେ କଳା କଳା ଦାଗମାନ ଦେଖାଦେଇ-ଥାଏ । ଏହା ଫଳରେ ପୃଥିବୀରେ ଭଲ ଫସଲ ଉତ୍ପାଦିତ ହୋଇଥାଏ ଏବଂ ଗଛଲତାଙ୍କର ମଧ୍ୟ ଅଭିବୃଦ୍ଧି ଘଟିଥାଏ । ଏଥି ସହିତ ଇନ୍‌ଫ୍ଲୁଏଞ୍ଜା ରୋଗ ବି ବୃଦ୍ଧି ପାଇଥାଏ ।

## ଆଲୋକ ବର୍ଷ—

ଆଲୋକ ପ୍ରତି ସେକେଣ୍ଡରେ ୧୮୬୦୦୦ ମାଇଲ ଗତି କରିଥାଏ । ତେଣୁ ଗୋଟିଏ ଆଲୋକ ବର୍ଷର ଦୂରତ୍ୱ ହେଉଛି ୫୮୮୦ ନିୟୁତ ମାଇଲ ବା ୯୪୬୧ ହଜାର କିଲୋମିଟର । ସାଇରସ୍ ଏବଂ ଡଗ୍‌ଷ୍ଟାର ନାମକ ନକ୍ଷତ୍ରଦ୍ୱୟ ପୃଥିବୀଠାରୁ ୮.୬ ଆଲୋକ ବର୍ଷ ଦୂରରେ ଅଛନ୍ତି । ସାଇରସ୍ ନକ୍ଷତ୍ରର ଆଲୋକ ପୃଥିବୀରେ ପହଞ୍ଚିବାକୁ ସାଢ଼େ ଆଠ ବର୍ଷ ଲାଗିଥାଏ ।

## ବିଜୁଳିର ପ୍ରକାଶ—

ବୈଜ୍ଞାନିକମାନେ ହିସାବ କରି ଜାଣିପାରିଛନ୍ତି ଯେ, ସମଗ୍ର ପୃଥିବୀରେ ୨୪ ଘଣ୍ଟା ଭିତରେ ହାରାହାରି ଦୁଇ ଲକ୍ଷ ଥର ବିଜୁଳି ମାରିଥାଏ ।

## ବୃହତ୍ତମ ମନ୍ଦିର—

କାମ୍ବୋଡିଆର 'ଅଙ୍ଗକୋରବତ୍' ମନ୍ଦିର ପୃଥିବୀରେ ବୃହତ୍ତମ । ଏହା ୪୦୨ ଏକର ପରିମିତ ସ୍ଥାନରେ ନିର୍ମିତ ହୋଇଛି ।

## ପ୍ରାଚୀନ ସୂର୍ଯ୍ୟ ମନ୍ଦିର—

ଭୂସ୍ୱର୍ଗ କାଶ୍ମୀରର ମାର୍ତ୍ତଣ୍ଡ ନଗରଠାରେ ସୂର୍ଯ୍ୟଦେବତାଙ୍କ ଉଦ୍ଦେଶ୍ୟରେ ନିର୍ମିତ ଏକ ମନ୍ଦିରର ଧ୍ୱଂସାବଶେଷ ରହିଛି । ଏହି ମନ୍ଦିରଟି ଖ୍ରୀଃ ପୂଃ ୩୦୦୦ ବର୍ଷ ପୂର୍ବେ ରାମଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା ଏବଂ ୮ମ ଶତାବ୍ଦୀରେ ରାଜା ଲଳିତାଦିତ୍ୟଙ୍କ ଦ୍ୱାରା ଜୀର୍ଣ୍ଣ ସଂସ୍କାର କରାଯାଇଥିଲା, କିନ୍ତୁ ଏହା ଧ୍ୱଂସ ପ୍ରାପ୍ତ ହେବାରୁ ସୂର୍ଯ୍ୟ ପୂଜା ଉଦ୍ଦେଶ୍ୟରେ ଏକ ଆଧୁନିକ ମନ୍ଦିର ନିର୍ମାଣ କରାଯାଇଛି ।

ମାର୍ତ୍ତଣ୍ଡ ନଗରଠାରୁ ପ୍ରାୟ ୨ ମାଇଲ ଦୂରରେ ମାର୍ତ୍ତଣ୍ଡ ଝରଣା ଅବସ୍ଥିତ । ଏହି ଝରଣା ନିକଟରେ ପାଖାପାଖି ହୋଇ ଗୋଟିଏ ଶିବ ମନ୍ଦିର ଏବଂ ଗୋଟିଏ ମସ୍‌ଜିଦ୍ ରହିଛି ।

## ସୁନ୍ଦରତମ ପ୍ରାସାଦ—

ପୃଥିବୀରେ ଯେତେଗୁଡ଼ିଏ ସୁନ୍ଦର ଓ ଐଶ୍ୱର୍ଯ୍ୟପୂର୍ଣ୍ଣ ରାଜପ୍ରାସାଦ ରହିଛି, ସେଗୁଡ଼ିକ ମଧ୍ୟରେ ପେକିଂର 'ଷଇନିଜ୍ ଇମ୍ପେରିଆଲ' ପ୍ୟାଲେସ୍ ସର୍ବପ୍ରଧାନ ।

ପେକିଂ ସହର ମଧ୍ୟଭାଗରେ ଅବସ୍ଥିତ ଏହି ପ୍ରାସାଦଟି ୧୮୦ ଏକର ଭୂମି ଉପରେ ନିର୍ମିତ ହୋଇଛି । ଏହାର ଚତୁଃପାର୍ଶ୍ୱରେ ଯେଉଁ ପରିଖା ରହିଛି ତାହା ସମଗ୍ର ପୃଥିବୀରେ ବୃହତ୍ତମ ପରିଖା ରୂପେ ବିବେଚିତ ହୋଇଥାଏ । ଏହି ପ୍ରାସାଦଟିର ନିର୍ମାଣ କାର୍ଯ୍ୟ ୧୪ଶ ଶତାବ୍ଦୀରେ ଆରମ୍ଭ ହୋଇ ପ୍ରାୟ ୪୦୦ ବର୍ଷରେ ଶେଷ ହୋଇଥିଲା ।

## ରାଷ୍ଟ୍ରପତି ଭବନ—

ନୂଆଦିଲ୍ଲୀସ୍ଥିତ ଭାରତର ରାଷ୍ଟ୍ରପତିଙ୍କ ଭବନ ୩୦୦ ଏକର ପରିମିତ ଭୂମି ଉପରେ ଅବସ୍ଥିତ । ଏଥିରେ ଛୋଟବଡ ହୋଇ ପ୍ରାୟ ୩୨୦ଟି କୋଠରୀ ରହିଛି, କିନ୍ତୁ ରାଷ୍ଟ୍ରପତି ଏଥିରୁ ମାତ୍ର ୩ଟି କୋଠରୀ ବ୍ୟବହାର କରନ୍ତି ।

ରାଷ୍ଟ୍ରପତି ଭବନ ଅଗଣାର ଦୈର୍ଘ୍ୟ ପ୍ରାୟ ଦେଢ଼ ମାଇଲ ଏବଂ ସେଥିରେ ୨୨୭ଟି ବଡ ବଡ ସ୍ତମ୍ଭ ରହିଛି । ଭବନର କାର୍ଯ୍ୟ ପରିଚାଳନା ପାଇଁ ଏଠାରେ ୩ ହଜାର କର୍ମଚାରୀ ଅଛନ୍ତି ଏବଂ ଏହାର ବାର୍ଷିକ ଖର୍ଚ୍ଚ ପ୍ରାୟ ୫୦ରୁ ୬୦ଲକ୍ଷ ଟଙ୍କା । ଏହି ଭବନ ନିର୍ମାଣ ପାଇଁ ୧୮ ବର୍ଷ ସମୟ ଲାଗିଥିଲା ଏବଂ ନିର୍ମାଣ କାର୍ଯ୍ୟରେ ୨୫ ଲକ୍ଷ କ୍ୟୁବିକ୍ ଫୁଟ ପଥର, ୪୫ଲକ୍ଷ ଇଟା, ସାଢ଼େ ସାତ ହଜାର ଟନ ସିମେଣ୍ଟ, ୧୩୦୦ ଟନ୍ ଲୁହା ଓ ଅସଂଖ୍ୟ କ୍ୟୁବିକ ଫୁଟର କାଠ ବ୍ୟବହୃତ ହୋଇଥିଲା । ଏହି ଭବନର ଘରଗୁଡ଼ିକରେ ଧଳା ଓ କଳା ରଙ୍ଗର ମାର୍ବଲ ପଥର ବ୍ୟବହୃତ ହୋଇଛି ।

## ଦିଲ୍ଲୀ ପାର୍ଲାମେଣ୍ଟ ଭବନ—

ଭାରତର ରାଜଧାନୀ ଦିଲ୍ଲୀ ପାର୍ଲାମେଣ୍ଟ ଭବନ ୧୯୨୭ ମସିହା ଜାନୁଆରୀ ୨୮ ତାରିଖ ଦିନ ତଦାନୀନ୍ତନ ବଡଲାଟ ଲର୍ଡ ଇରଭଇନ୍‌ଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା । ଏହି ମନୋରମ ଅଟ୍ଟାଳିକାଟି ୬ ବର୍ଷ ସମୟରେ ଏବଂ ୮୩ ଲକ୍ଷ ଟଙ୍କା ବ୍ୟୟରେ ନିର୍ମିତ ହୋଇଥିଲା ।

## ବୃହତ୍ତମ ହୋଟେଲ—

ଆଟଲାଣ୍ଟାର ଜର୍ଜିଆରେ ପୃଥିବୀର ବୃହତ୍ତମ ହୋଟେଲ ପ୍ରତିଷ୍ଠିତ ହୋଇଛି । ଏହି ହୋଟେଲଟିର ଆକାର ଗୋଲ ଏବଂ ଉଚ୍ଚତା ୨୩୦ ମିଟର । ଏହା ୭୦ ମହଲା ବିଶିଷ୍ଟ ଏବଂ ଭିତରେ ୧୦୦୦ କୋଠରୀ ରହିଛି । ହୋଟେଲର ସମ୍ମୁଖରେ ୨ ହଜାର ବର୍ଗମିଟର ପରିମିତ ଏକ ଛୋଟ ହ୍ରଦ ମଧ୍ୟ ରହିଛି ।

## ସପ୍ତ ପାହାଡ଼ର କନ୍ୟା : ରୋମ୍—

ଇଟାଲୀର ରାଜଧାନୀ ରୋମ୍ ହେଉଛି ପୃଥିବୀରେ ସର୍ବପ୍ରାଚୀନ ନଗରୀ । ଖ୍ରୀ. ପୂ. ୭୫୦ରେ ଏହି ନଗରୀଟି ସ୍ଥାପିତ ହୋଇଥିଲା । ସାତୋଟି ଅଳ୍ପ ଉଚ୍ଚ ପାହାଡ ଉପରେ ନଗରୀଟି ପ୍ରତିଷ୍ଠିତ ହୋଇଥିବାରୁ ଏହାକୁ 'ସପ୍ତ ପାହାଡର କନ୍ୟା' ନାମରେ ଅଭିହିତ କରଯାଇଛି । ଏହି ନଗରୀ ମଧ୍ୟଦେଇ ବହି ଯାଉଥିବା 'ଟିବର' ନଦୀ ଉପରେ ଅନେକଗୁଡ଼ିଏ ସୁନ୍ଦର ସୁନ୍ଦର ପୋଲ ରହିଛି । ଏଠାରେ ଥିବା ବିଶ୍ୱବିଦ୍ୟାଳୟ ଭବନଟି ୪୦ ଏକର ପରିମିତ ଭୂମି ଉପରେ ପ୍ରତିଷ୍ଠିତ । ତେଣୁ କେହି କେହି ଏହାକୁ ବିଶ୍ୱବିଦ୍ୟାଳୟ ସହର ମଧ୍ୟ କହନ୍ତି ।

୧୯୪୩ ମସିହା ପର୍ଯ୍ୟନ୍ତ ଏଠାରେ ରାଜତନ୍ତ୍ର ଶାସନ ପ୍ରଚଳିତ ଥିଲା; କିନ୍ତୁ ମୁସୋଲିନ୍ ତତ୍କାଳୀନ ରୋମ୍ ସମ୍ରାଟଙ୍କୁ ଗାଦୀଚ୍ୟୁତ କରି ଏଠାରେ ଫାସିଷ୍ଟ ଶାସନ ପ୍ରବର୍ତ୍ତନ କରିଥିଲେ ।

ରୋମ୍‌ର ଭାଟିକାନ୍ ପ୍ରାସାଦ ଖ୍ରୀଷ୍ଟଧର୍ମ ଜଗତର କେନ୍ଦ୍ରସ୍ଥଳ । ଖ୍ରୀଷ୍ଟ-ଧର୍ମର ପ୍ରଧାନ ଧର୍ମଗୁରୁ 'ପୋପ୍' ଏଠାରେ ସ୍ୱାଧୀନ ଭବରେ ବାସ କରନ୍ତି । ଏହି ପ୍ରାସାଦଟି ୧୦୯ ଏକର ଜମି ଉପରେ ପ୍ରତିଷ୍ଠିତ ଏବଂ ଏକ ସ୍ୱାଧୀନ ରାଷ୍ଟ୍ର ରୂପେ ପରିଗଣିତ ହୋଇଥାଏ ।

## ଆମେରିକା ନାଁ କିପରି ହେଲା—

ଇଟାଲୀୟ ନାବିକ ଆମେରିକସ୍‌ଭେସପୁଚି ( ୧୪୫୪-୧୫୧୨ ) ସର୍ବ-ପ୍ରଥମେ ଆଟଲାଣ୍ଟିକ୍ ମହାସାଗର ଉପକୂଳ ବର୍ତ୍ତୀ ନୂତନ ଜଗତ ସମ୍ପର୍କରେ ସୂଚନା ଦେବା ସଙ୍ଗେ ସଙ୍ଗେ ଏହାର ମାନଚିତ୍ର ମଧ୍ୟ ଅଙ୍କନ କରିଥିଲେ । ତାଙ୍କରି ନାମାନୁସାରେ ଏହି ନୂତନ ଭୂଖଣ୍ଡକୁ ଆମେରିକା ନାମରେ ନାମିତ କରଯାଇ-ଥିଲା; କିନ୍ତୁ ଆମେରିକସଙ୍କ ବହୁ ପୂର୍ବରୁ ଖ୍ରୀଷ୍ଟୋଫର କଲମ୍ବସ ସେହି ଭୂଖଣ୍ଡରେ ପଦାର୍ପଣ କରିଥିଲେ , ତେଣୁ ଆମେରିକା ପରିବର୍ତ୍ତେ ଏହି ଭୂଖଣ୍ଡକୁ 'କଲମ୍ବିଆ' ନାମରେ ନାମିତ କରିବାକୁ ଉଦ୍ୟମ ହୋଇଥିଲା । ମାତ୍ର ତାହା ଫଳବତୀ ହୋଇପାରିଲା ନାହିଁ ।

## ଓ୍ୱାସିଂଟନ ଡ଼ି. ସି.—

ଓ୍ୱାସିଂଟନ ଶବ୍ଦ ପାଖରେ ଡି. ସି. ନାମରେ ଯେଉଁ ଅକ୍ଷର ଦୁଇଟି ବସେ, ତାର ପୂର୍ଣ୍ଣ ନାମ ହେଲା ଡିଷ୍ଟ୍ରିକ୍ଟ ଅଫ କଲମ୍ବିଆ । ଏହା କେନ୍ଦ୍ର

ସରକାରଙ୍କ ଶାସିତ ଅଞ୍ଚଳ ଏବଂ ଏହିଠାରେ ଯୁକ୍ତରାଷ୍ଟ୍ରର ରାଜଧାନୀ ଅବସ୍ଥିତ । ଆମେରିକାର ପଶ୍ଚିମ ଉପକୂଳରେ ଓ୍ୱାସିଂଟନ୍ ନାମରେ ଅନ୍ୟ ଗୋଟିଏ ରାଜ୍ୟ ଅଛି । ଏହି ରାଜ୍ୟଠାରୁ ରାଜଧାନୀ ଓ୍ୱାସିଂଟନ୍‌ର ସ୍ୱତନ୍ତ୍ରତା ବୁଝାଇବାପାଇଁ ଡ: ସି: ଅକ୍ଷର ବ୍ୟବହୃତ ହୋଇଥାଏ ।

## ବୃହତ୍ତମ ଥିଏଟର ଗୃହ—

ଚୀନର ନ୍ୟାସନାଲ ପିପୁଲସ ବିଲ୍‌ଡିଂ ହେଉଛି ପୃଥିବୀର ବୃହତ୍ତମ ଥିଏଟର ଗୃହ । ଏହି ଗୃହଟି ୧୬.୯ ଏକର ପରିମିତ ସ୍ଥାନ ଉପରେ ନିର୍ମିତ ହୋଇଛି ଏବଂ ୧୦୦୦୦ ଦର୍ଶକଙ୍କ ପାଇଁ ସ୍ଥାନର ବ୍ୟବସ୍ଥା କରଯାଇଛି । ୧୯୫୯ ମସିହାରେ ଏହି ପ୍ରାସାଦଟିର ନିର୍ମାଣ କାର୍ଯ୍ୟ ଶେଷ ହୋଇଥିଲା ।

## ବୃହତ୍ତମ ପ୍ରେକ୍ଷାଳୟ—

ଆମେରିକାର ନ୍ୟୁୟର୍କ ସହରସ୍ଥିତ 'ରେଡ଼ିଓସିଟି' ହେଉଛି, ପୃଥିବୀର ବୃହତ୍ତମ ପ୍ରେକ୍ଷାଳୟ । ଏହି ପ୍ରେକ୍ଷାଳୟରେ ୪୪୦୦ ଦର୍ଶକ ଏକ ସମୟରେ ଚଳଚିତ୍ର ଦେଖିପାରିବେ ।

## ବୃହତ୍ତମ ଚିଡ଼ିଆଖାନା—

ଦକ୍ଷିଣ ପଶ୍ଚିମ ଏସିଆର ଏଟୋସାଗଭର୍ଭ ହେଉଛି ପୃଥିବୀର ବୃହତ୍ତମ ଚିଡ଼ିଆଖାନା । ଏହାର କ୍ଷେତ୍ରଫଳ ୩.୮୪୨୭ ବର୍ଗମାଇଲ ଏବଂ ଏଠାରେ ୧୫୦୦୦୦ ଜୀବଜନ୍ତୁ ଅଛନ୍ତି ।

## ବୃହତ୍ତମ ପାର୍କ—

ଇୟେଲଷ୍ଟୋନ୍ ନ୍ୟାସନାଲ ପାର୍କ ହେଉଛି ଆମେରିକାର ବୃହତ୍ତମ ପାର୍କ । ଏହାର କ୍ଷେତ୍ରଫଳ ୩୪୬୮ ବର୍ଗମାଇଲ । ଏହା ଯେ କେବଳ ବୃହତ୍ତମ, ତା ନୁହେଁ, ପ୍ରାଚୀନତମ ଓ ଖ୍ୟାତନାମା । ଏହି ପାର୍କରେ ସହସ୍ରାଧିକ ଝରଣା ଓ ଉଷ୍ଣପ୍ରସ୍ରବଣମାନ ରହିଛି । ଓଲ୍‌ଡ ଫେଥ୍‌ଫୁଲ ନାମରେ ଏକ ଉଷ୍ଣପ୍ରସ୍ରବଣ ପ୍ରତିଘଣ୍ଟାରେ ୮୫ ହଜାର ଗ୍ୟାଲନ୍ ଜଳ ଉର୍ଦ୍ଧ୍ୱକୁ ନିକ୍ଷିପ୍ତ କରିଥାଏ । ଏତଦ୍‌ବ୍ୟତୀତ ଏଠାରେ କେତେକ ଆଗ୍ନେୟଗିରି, ହ୍ରଦ, ନଦୀ ଏବଂ ଜଳପ୍ରପାତ ଆଦି ରହିଛି । ବହୁ ପ୍ରକାରର ବନ୍ୟପ୍ରାଣୀ ମଧ୍ୟ ଏହି ଜାତୀୟ ଉଦ୍ୟାନରେ ବାସକରନ୍ତି ।

## ଗୁଡ଼ର ଯାଦୁଘର—

ଜାପାନର ରାଜଧାନୀ ଟୋକିଓର ନହୋନବାସିଠ'ରେ ଗୋଟିଏ ଗୁଡର ଯାଦୁଘର ରହିଛି, ପୃଥିବୀର ବିଭିନ୍ନ ଦେଶରୁ ସଂଗୃହୀତ ହୋ'ଇଥିବା ପ୍ରାୟ ୨୫୦୦ ପ୍ରକାରର ଗୁଡ ଏଠାରେ ସଂରକ୍ଷିତ ରହିଛି । ଏହି ଯାଦୁଘରର ପ୍ରତିଷ୍ଠାତା ହେଉଛନ୍ତି'ସିଙ୍ଗୋମୋଟେଗୀ' 'ନାମରେ ଜଣେ ରେଷ୍ଟୁରାଣ୍ଟ ମାଲିକ ।

## ସ୍ମୃତିର ସ୍ମାରକୀ—

ଆବିଷ୍କାରକ କଲମ୍ବସଙ୍କର ସ୍ୱହସ୍ତଲିଖିତ ପତ୍ର, ତାଙ୍କ ଜଳଯାତ୍ରାର ବିବରଣୀ ଏବଂ ଅନେକ ଦସ୍ତାବିଜ୍ ସ୍ପେନର 'ସିଭଲ' ସହରସ୍ଥିତ ଏକ ପୁସ୍ତକାଳୟରେ ରଖାଯାଇଛି ।

ମୋଗଲ ସମ୍ରାଟ ଶାହାଜାହାନ ଯେଉଁ ପାତ୍ରରେ ସୁରପାନ କରୁଥିଲେ, ତାହା ହାଇଦ୍ରାବାଦସ୍ଥିତ ସାଲାରଜଙ୍ଗ ମ୍ୟୁଜିୟମ୍‌ରେ ସଂରକ୍ଷିତ ରହିଛି ।

ସନ୍ଥଗୁରୁ ନାନକ ସ୍ୱହସ୍ତରେ ଯେଉଁ ପୁସ୍ତକ ଲେଖିଥିଲେ, ତାହା ଅମୃତସରର ଗୁରୁଦ୍ୱାରରେ ସଂରକ୍ଷିତ ରହିଛି ।

ମହାରାଜା ଭୋଜଙ୍କ ସମୟର ଭୂର୍ଜପତ୍ର ବରୋଦା ମ୍ୟୁଜିୟମ୍‌ରେ ରଖାଯାଇଛି ।

ମହାରାଣା ପ୍ରତାପଙ୍କର ବର୍ଚ୍ଛା, ତରବାରି, ଢାଲ ଓ ଆହୁରି ଅନେକ ଅସ୍ତ୍ରଶସ୍ତ୍ର ଉଦୟପୁର ମ୍ୟୁଜିୟମ୍‌ରେ ସଂରକ୍ଷିତ ରହିଛି ।

## ପିରନିଜ ପର୍ବତମାଳା—

ଫ୍ରାନ୍‌ସ ଓ ସ୍ପେନ ଦେଶର ମଧ୍ୟଭାଗରେ ଥିବା ପିରନିଜ୍ ପର୍ବତମାଳା ସମୁଦ୍ର ପତ୍ତନଠାରୁ ପ୍ରାୟ ୯ ହଜାର ଫୁଟ ଉଚ୍ଚ । ଏହି ପର୍ବତମାଳାରେ ଅନେକ ଗୁଡ଼ିଏ ବିଚିତ୍ର ଗୁମ୍ଫା ରହିଛି । ଗୁମ୍ଫାଗୁଡିକ ଦେଖିବାକୁ ଠିକ୍ ମଣିଷ ହାତ ତିଆରି କୋଠରି ଭଳି ଏବଂ ସେଗୁଡିକ ମଝିରେ ସିଡ଼ି ମଧ୍ୟ ରହିଛି । ଏଠାରେ ସବୁବେଳେ ଥଣ୍ଡା ପବନ ବହୁଥାଏ । ତେଣୁ ଗ୍ରୀଷ୍ମ କାଳରେ ମଧ୍ୟ ଏଠାରେ ବରଫ ତରଳେ ନାହିଁ । ଓଦାଲୁଗାଟିଏ ନେଇଗଲେ, ମୁହୂର୍ତ୍ତକ ମଧ୍ୟରେ ତାହା ବରଫପରି ଟାଣ ହୋଇଯାଏ ।

ଗୁମ୍ଫାଗୁଡିକ ଦେଖିଲେ ମନେହେବ, ସତେ ଯେମିତି କେହି ସେଗୁଡିକୁ ଦୁର୍ଗ ଆକାରରେ ସଜାଇ ଦେଇଛି । ନୋବର୍ଟ କାଷ୍ଟେରଟ ନାମରେ ଜଣେ ପର୍ବତାରୋହୀ ତାଙ୍କ ସ୍ତ୍ରୀ ସହିତ ସେଠିକି ଯାଇ ଅନେକ ନୂଆ ଗୁମ୍ଫା ଆବିଷ୍କାର କରିଥିଲେ ।

## ମୃତ୍ୟୁ ଉପତ୍ୟକା—

କାଲିଫର୍ଣ୍ଣିଆ ରାଜ୍ୟରେ ଥିବା 'ଡାଭ'ର ମୃତ୍ୟୁ ଉପତ୍ୟକା ୧୮୪୯ ମସିହାରେ ଆବିଷ୍କୃତ ହୋଇଥିଲା । ଦଳେ ଯାଯାବର ଜାତିର ଲୋକ ବୁଲୁ ବୁଲୁ ଅକସ୍ମାତ ଏଠାରେ ପହଞ୍ଚି ଯାଇଥିଲେ ଏବଂ ସେମାନଙ୍କ ମଧ୍ୟରୁ କେତେକ ମୃତ୍ୟୁବରଣ କରିଥିଲେ, ଫଳରେ ଏହି ଉପତ୍ୟକାଟି ଲୋକଲୋଚନକୁ ଆସି ପାରିଥିଲା ।

ଏହି ଉପତ୍ୟକାରେ ପ୍ରାୟ ୩୦ ଫୁଟ ଉଚ୍ଚତାର ଅଙ୍ଗାରକାମ୍ଳ ବାଷ୍ପ ପୁରି ରହିଛି । ତେଣୁ ଏଠାକୁ ମଣିଷ, ପଶୁ, ପକ୍ଷୀ ଆଦି ଯେ କେହି ଗଲେ ବି ମୃତ୍ୟୁବରଣ କରିଥାନ୍ତି । ସେଇଥିପାଇଁ ଏହା ମୃତ୍ୟୁ ଉପତ୍ୟକା ନାମରେ ପରିଚିତ ।

ନେପଲସ ସହର ନିକଟବର୍ତ୍ତୀ ଗୋଟିଏ ପାହାଡ଼ ଗୁମ୍ଫାରେ ୨୧୩ ଫୁଟ ଉଚ୍ଚତାର ଅଙ୍ଗାରକାମ୍ଳ ବାଷ୍ପ ପୂରି ରହିଛି । ମୃତ୍ୟୁ ଉପତ୍ୟକା ପରି ଏଠାରେ ମଧ୍ୟ ପ୍ରାଣୀମାନେ ମୃତ୍ୟୁବରଣ କରିଥାନ୍ତି । ତେଣୁ ଏହା ମୃତ୍ୟୁ ଗୁମ୍ଫା ନାମରେ ପରିଚିତ ।

## ହାୱାଇ ଦ୍ୱୀପ—

ପ୍ରଶାନ୍ତ ମହାସାଗର ମଧ୍ୟଭାଗରେ ୨୦ଟି ଦ୍ୱୀପକୁ ନେଇ "ହାୱାଇ ଦ୍ୱୀପପୁଞ୍ଜ ଗଠିତ । ଏହି ଦ୍ୱୀପଗୁଡ଼ିକ ମଧ୍ୟରୁ ୮ଟିରେ ମାତ୍ର ମନୁଷ୍ୟ ବାସ କରନ୍ତି । ପୃଥିବୀର ବୃହତ୍ତମ ଆଗ୍ନେୟଗିରି 'ମୌନାଲୋଆ' ଏହି ଦ୍ୱିପପୁଞ୍ଜରେ ଅବସ୍ଥିତ । ଏହି ଦ୍ୱୀପପୁଞ୍ଜ ହେଉଛି ଆମେରିକା ଯୁକ୍ତରାଷ୍ଟ୍ରର ୫୦ତମ ରାଜ୍ୟ ।

## ବୃହତ୍ ଝରଣା—

ଫ୍ରାନ୍ସର ସେଣ୍ଟମାର୍ଟିନଲାକଲଡ ନାମକ ଝରଣା ଜଳରୁ ନୀଳ ରଙ୍ଗର ଅଗ୍ନି ଉଦ୍‌ଗୀରଣ ପ୍ରାୟ ହଜାରେ ବର୍ଷ ପର୍ଯ୍ୟନ୍ତ ଚାଲିଥିଲା ।

## କଲରାଡୋ ନଦୀ—

ଯୁକ୍ତରାଷ୍ଟ୍ର ଆମେରିକାରେ ପ୍ରବାହିତ କଲରାଡୋ ନଦୀର ଦୈର୍ଘ୍ୟ ପ୍ରାୟ ୧୪୫୦ ମାଇଲ । ଏହା ରୁକୀ ପର୍ବତର ଦକ୍ଷିଣ ପଶ୍ଚିମରୁ ବାହାରି କାଲିଫର୍ଣ୍ଣିଆ ଗଲ୍ଫ ଏବଂ ମେକ୍ସିକୋର ପଶ୍ଚିମରେ ପ୍ରବାହିତ ହେଉଛି । ଏହି ନଦୀରେ ଅନେକଗୁଡ଼ିଏ ଡ୍ୟାମ୍ ନିର୍ମିତ ହୋଇଛି । ସେଗୁଡ଼ିକ ମଧ୍ୟରେ 'ହୁଭରଡ୍ୟାମ୍' ସର୍ବପ୍ରଧାନ ।

## ଏସିଆର ବୃହତ୍ତମ ପୋଲ—

ଓରଚର ସୋନନଦୀ ଉପରେ ନିର୍ମିତ ପୋଲ ହେଉଛି ସମଗ୍ର ଏସିଆରେ ବୃହତ୍ତମ । ଏହାର ଦୈର୍ଘ୍ୟ ୧୦୦୪୪ ଫୁଟ । ଏହାର ନିର୍ମାଣପାଇଁ ୨କୋଟି ୬୯ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଥିଲା ।

## ଦୀର୍ଘତମ ରେଲପୋଲ—

ପୃଥିବୀର ଦୀର୍ଘତମ ରେଲପୋଲ ହେଉଛି ଯୁକ୍ତରାଷ୍ଟ୍ର ଆମେରିକାର ଲୋଉଇସିଆନାହୁୟେ ପି. ଲଙ୍ଗବ୍ରିଜ । ଏହି ପୋଲଟିର ନିର୍ମାଣ କାର୍ଯ୍ୟ ୧୯୩୫ ମସିହା ଡିସେମ୍ବର ମାସରେ ଶେଷ ହୋଇଥିଲା ।

## ଧାତୁ ନିର୍ମିତ ପୋଲ—

ଆଲୁମିନିୟମ ସହିତ ଅନ୍ୟ ଧାତୁର ଖାଦ ମିଶିଲେ ତାହା ଇସ୍ପାତ ପରି ଏକ ଶକ୍ତ ଧାତୁରେ ପରିଣତ ହୋଇଯାଏ । ଏହି ନୂତନ ଧାତୁରେ ୧୯୪୯ ମସିହାରେ ସଣ୍ଡାରଲ୍ୟାଣ୍ଡଠାରେ ୯୦ ଫୁଟ ଦୈର୍ଘ୍ୟ ବିଶିଷ୍ଟ ଏକ ପୋଲ ନିର୍ମିତ ହୋଇଛି । ପୋଲଟି ଖୁବ ହାଲୁକା ହେଲେ ମଧ୍ୟ ମଜଭୁତ । ଏଥିରେ ଜଙ୍ଗ ଧରୁନାହିଁ କି ରଙ୍ଗଦେବାକୁ ମଧ୍ୟ ପଡୁନାହିଁ ।

## ଭାସମାନ ପୋଲ—

ପୃଥିବୀର ବୃହତ୍ତମ ଭାସମାନ ପୋଲ ରହିଛି ଓ୍ୱାସିଂଟନ ପ୍ରଦେଶର ସିଟଲ ସହରରେ କଂକ୍ରିଟରେ ତିଆରି ୨୮ଟି ଖୋଲା ନୌକା ଉପରେ ଏହି ପୋଲଟି ନିର୍ମିତ ହୋଇଛି । ଏହାର ଦୈର୍ଘ୍ୟ ୬୬୬୨ ଫୁଟ ଏବଂ ଓଜନ ପ୍ରାୟ ୪୫୦୦ ଟନ୍ । ପୃଥିବୀର ଅନ୍ୟତମ ଭାସମାନ ସେତୁ ଟାସ୍‌ମାନିଆ ଅଞ୍ଚଳରେ ରହିଛି ।

## ସମୁଦ୍ରର ଗଭୀରତା—

୧୯୧୨ ମସିହା ପର୍ଯ୍ୟନ୍ତ ଉତ୍ତର ପ୍ରଶାନ୍ତ ମହାସାଗରର ଚୁଆସ୍ ଦ୍ୱୀପ ପାଖରେ ଥିବା ସ୍ଥାନଟି ଗଭୀରତମ ବୋଲି ଜଣାଯାଇଥିଲା । ଏହି ସ୍ଥାନର ଗଭୀରତା ଥିଲା ୬ ମାଇଲରୁ ମାତ୍ର ୬୬ ଫୁଟ କମ୍, କିନ୍ତୁ ୧୯୫୧ ମସିହାରେ ମାରିଆନାଟ୍ରେଞ୍ଚ୍ ଗଭୀରତମ ବୋଲି ଜଣାପଡ଼ିଲା । ଏହାର ଗଭୀରତା ଥିଲା ୩୫୬୪୦ ଫୁଟ ।

ଭରତ ମହାସାଗରର ଗଭୀରତମ ସ୍ଥାନ ହେଉଛି 'ହାରେନ୍‌ଡପ' । ଏହାର ଗଭୀରତା ୨୨୯୬୮ ଫୁଟ । ଆଟଲାଣ୍ଟିକ ମହାସାଗରର ଗଭୀରତମ ସ୍ଥାନ ହେଉଛି ନାରେସ ଡପ୍, ଏହାର ଗଭୀରତା ୨୭୩୭୨ ଫୁଟ ।

## ସମୁଦ୍ର ଗର୍ଭରେ ଘାଟୀ—

ଆମେରିକାର ବୈଜ୍ଞାନିକମାନେ ଅନୁସନ୍ଧାନ କରି ଜାଣିପାରିଛନ୍ତି ଯେ, ଭରତ ମହାସାଗର ତଳେ ସୁମାତ୍ରା ଦ୍ୱୀପର ଉତ୍ତର ପାଖରୁ ବର୍ମାର ଦକ୍ଷିଣ ପଶ୍ଚିମ ପର୍ଯ୍ୟନ୍ତ ଦୀର୍ଘ ୬୦୦ ମାଇଲ ବ୍ୟାପୀ ଏକ ଘାଟୀ ରହିଛି । ଏହି ଘାଟୀର ନାଁ ହେଉଛି 'ରିଫ୍‌ଟଭ୍ୟାଲି' । କୌଣସି ଆଗ୍ନେୟଗିରିର ଅଗ୍ନ୍ୟୁତ୍ପାତ ଫଳରେ ଏହି ଘାଟୀର ସୃଷ୍ଟି ହୋଇଛି ବୋଲି ବୈଜ୍ଞାନିକମାନେ ମତପ୍ରକାଶ କରନ୍ତି ।

## ସମୁଦ୍ର ଜଳର ସ୍ତର—

ଫେବୃଆରୀ ମାସ ବ୍ୟତୀତ ବର୍ଷର ଅନ୍ୟ ଏଗାର ମାସଯାକ ପ୍ରଶାନ୍ତ ମହାସାଗରର ଜଳପତ୍ତନ ଆଟଲାଣ୍ଟିକ ମହାସାଗର ଜଳପତ୍ତନଠାରୁ ଉଚ୍ଚରେ ରହିଥାଏ । କିନ୍ତୁ କେବଳ ଫେବୃୟାରୀ ମାସଟିରେ ଉଭୟ ସାଗରର ଜଳପତ୍ତନ ସମାନ ରହିଥାଏ ।

## ଗରମ ସମୁଦ୍ର—

ପଶ୍ଚିମ ଏସିଆର ପର୍ସିଆନଗଲ୍‌ଫ ହେଉଛି ପୃଥିବୀରେ ସବୁଠାରୁ ଗରମ ସମୁଦ୍ର । ଏହି ସମୁଦ୍ର ଜଳର ଉତ୍ତାପ ହେଉଛି ୯୬ ଡିଗ୍ରୀ ଫାରେନହିଟ୍ ।

## ବିଶୁଦ୍ଧ ଜଳ—

ଇଂଲଣ୍ଡର ମେଲବୋର୍ଣ୍ଣଠାରେ ଥିବା ସେଣ୍ଟ୍ ଆନା ନାମରେ ଗୋଟିଏ କୂପ ଅଛି । ଏହି କୂପର ଜଳ ୯୯.୯୯୯୨ ଭାଗ ବିଶୁଦ୍ଧ, ଏପରି ବିଶୁଦ୍ଧ ଜଳ ପୃଥିବୀର ଅନ୍ୟ କୌଣସି ସ୍ଥାନରେ ନାହିଁ ।

## ପ୍ରତିଭାବାନ୍ ବ୍ୟକ୍ତି—

ଖ୍ୟାତନାମା ବ୍ରିଟିଶ ଦାର୍ଶନିକ ଜନ୍‌ଷ୍ଟୁଆର୍ଟମିଲ ମାତ୍ର ୩ବର୍ଷ ବୟସରେ ଗ୍ରୀକ୍ ଭାଷା ଓ ୮ ବର୍ଷ ବୟସରେ ଗଣିତ ଓ ଲାଟିନଭାଷା ଶିକ୍ଷା ଶେଷ କରିଥିଲେ । ୧୨ ବର୍ଷ ବୟସ ବେଳକୁ ସେ ତର୍କ ଶାସ୍ତ୍ରରେ ଦକ୍ଷତା ଅର୍ଜନ

କରିପାରିଥିଲେ । ୧୩ ବର୍ଷ ବୟସରେ ସେ ରାଜନୈତିକ ଅର୍ଥନୀତି ସମ୍ପର୍କରେ ବେଶ୍ ପାରଦର୍ଶିତା ଲାଭ କରିପାରିଥିଲେ । ୧୭ ବର୍ଷ ବୟସରେ ସେ ଇଷ୍ଟ-ଇଣ୍ଡିଆ କମ୍ପାନୀରେ ଚାକିରି ଜୀବନ ଆରମ୍ଭ କରିଥିଲେ । ଏହାପରେ ସେ କବିତା, ଇତିହାସ ଏବଂ ଅନ୍ୟାନ୍ୟ ବହୁ ବିଷୟରେ ପୁସ୍ତକମାନ ରଚନା କରିଥିଲେ ।

## ପ୍ରସିଦ୍ଧ ବ୍ୟକ୍ତି ଅଳ୍ପାୟୁଷ—

ଇଜିପ୍ଟର ଫାରୋ ଟୁଟାଙ୍ଖମେନ ମାତ୍ର ୧୮ ବର୍ଷ ବୟସରେ ପ୍ରାଣ-ତ୍ୟାଗ କରିଥିଲେ । ସେହିପରି ଫରାସୀ ବୀରାଙ୍ଗନା ଜୋନ ଅଫ ଆର୍କ ୧୯ ବର୍ଷରେ, ଇଂରାଜୀ କବି ଜନକିଟସ ୨୫ ବର୍ଷରେ, ସେଲି ୨୯ ବର୍ଷରେ, ଆମେରିକାର ଚିତ୍ରାଭିନେତା ରୁଡୋଲଫ ଭାଲେଣ୍ଟିନୋ ୩୧ ବର୍ଷରେ ଏବଂ ରୋମର ଶାସକ ନୀରୋ ୩୧ ବର୍ଷରେ ପ୍ରାଣତ୍ୟାଗ କରିଥିଲେ ।

## ୱାସିଂଟନ ଓ ଶୁକ୍ରବାର—

ଆମେରିକାର ସର୍ବପ୍ରଥମ ପ୍ରେସିଡେଣ୍ଟ ଜର୍ଜ ୱାସିଂଟନଙ୍କ ଜୀବନରେ ଶୁକ୍ରବାର ଦିନଟି ଅତ୍ୟନ୍ତ ସ୍ମରଣୀୟ । ଶୁକ୍ରବାର ଦିନ ସେ ଜନ୍ମ ଗ୍ରହଣ କରିଥିଲେ । ସୈନ୍ୟ ବାହିନୀର ମୁଖ୍ୟ ସେନାପତି ଭାବରେ ଶୁକ୍ରବାର ଦିନ ନିଯୁକ୍ତି ପାଇଥିଲେ । ୟର୍କ ଟାଉନ ଯୁଦ୍ଧରେ ଶୁକ୍ରବାର ଦିନ ବିଜୟୀ ହୋଇଥିଲେ । ଆମେରିକାର ପ୍ରେସିଡେଣ୍ଟ ରୂପେ ଶୁକ୍ରବାର ଦିନ ନିର୍ବାଚିତ ହୋଇଥିଲେ । ତାଙ୍କର ପ୍ରଥମ କ୍ୟାବିନେଟ ମନ୍ତ୍ରୀ ଆଲେକ୍‌ଜାଣ୍ଡର ହାମିଲଟନଙ୍କୁ ଶୁକ୍ରବାରେ ନିଯୁକ୍ତ କରିଥିଲେ । ରାଷ୍ଟ୍ରପତି ବାସଭବନ ହ୍ୱାଇଟ ହାଉସର ଶୁକ୍ରବାରେ ଶୁଭ ଦେଇଥିଲେ । ପ୍ରେସିଡେଣ୍ଟ ପଦରୁ ସେହି ଶୁକ୍ରବାରେହିଁ ବିଦାୟ ନେଇଥିଲେ ।

## କୂଟନୈତିକ ଜ୍ୱର

୧୯୬୨ ମସିହାରେ ଆମେରିକାର ରାଷ୍ଟ୍ରପତି ଜନ୍ କେନେଡି ଚିକାଗୋ ସହରରେ ଯାଇଥିବା ବେଳେ, ହଠାତ୍ ସେ କହିଲେ ଯେ, ତାଙ୍କ ଦେହରେ ୧୦୧ ଡିଗ୍ରୀ ଉତ୍ତାପ ଓ ଭୀଷଣ ଜ୍ୱର । ଏ କଥାରେ ତାଙ୍କ ସହକାରୀମାନେ ବ୍ୟତିବ୍ୟସ୍ତ ହୋଇ ତାଙ୍କୁ ୱାସିଂଟନକୁ ଫେରାଇ ଆଣିଲେ କିନ୍ତୁ ପ୍ରକୃତରେ ତାଙ୍କୁ ଜ୍ୱର ହୋଇ ନଥିଲା । ସେତେବେଳକୁ ରୁଷ ପକ୍ଷରୁ ଆମେରିକା ଆଡକୁ ଲକ୍ଷ୍ୟ କରି କ୍ଷେପଣାସ୍ତ୍ରମାନ ଖଞ୍ଜା ହୋଇଥାଏ । ଏ ପରିସ୍ଥିତିରେ ୱାସିଂଟନଠାରେ

ତାଙ୍କର ଉପସ୍ଥିତି ଏକାନ୍ତ ଆବଶ୍ୟକ । ତେଣୁ ସେ ଡର ହେଉଛନ୍ତି କହି ଚିକାଗୋରୁ ପଳାଇ ଆସିଥିଲେ । ଏହାହିଁ କ୍ୟୁବା ସଙ୍କଟର ଏକ ଅପ୍ରକାଶିତ ଘଟଣା ।

## ଚନ୍ଦ୍ର ପୃଷ୍ଠରେ ପ୍ରଥମ ମଣିଷ—

ଚନ୍ଦ୍ର ପୃଷ୍ଠରେ ପାଦ ଦେବାରେ ଆମେରିକାର ନିଲ୍ ଆର୍ମଷ୍ଟ୍ରଙ୍ଗ ହେଉଛନ୍ତି ପୃଥିବୀର ପ୍ରଥମ ମଣିଷ । ୧୯୬୯ ମସିହା ଜୁଲାଇ ୨୧ ତାରିଖ ଦିନ ସେ ଚନ୍ଦ୍ରପୃଷ୍ଠରେ ପଦାର୍ପଣ କରିଥିଲେ ।

## କନିଷ୍ଠ ସନ୍ତରଣକାରୀ—

ଦକ୍ଷିଣ ଆଫ୍ରିକାର ୧୨ ବର୍ଷ ବୟସ୍କ ବାଳକ କେଭିନ୍ ଆଣ୍ଡରସନ୍ ୧୯୭୯ ମସିହା ଅଗଷ୍ଟ ୪ ତାରଖରେ ସାଢ଼େ ୧୨ ଘଣ୍ଟା ସମୟରେ ଇଂଲିଶ ଋନେଲକୁ ପହଁରି ଅତିକ୍ରମ କରିଥିଲେ । ଇଂଲିସ୍ ଋନେଲକୁ ଅତିକ୍ରମ କରିବାରେ ସେ ହେଉଛନ୍ତି ସର୍ବକନିଷ୍ଠ ସନ୍ତରଣକାରୀ ।

## ।ବହାଦୁର ବ୍ୟକ୍ତି—

ଫ୍ରାନ୍ସର ସେଣ୍ଟସଭଣ୍ଟନର ଅଧିବାସୀ ଅଣ୍ଡର ଭିନେସେଗଲ ୧୯୪୯ ମସିହା ସେପ୍ଟେମ୍ବର ୨୨ ତାରିଖ ଦିନ ଗୋଟିଏ ଉଡାଜାହାଜ ଲାଞ୍ଜରେ ଶିକୁଳି ବାନ୍ଧି ରଖିବା ଫଳରେ ତାହା ଉପରକୁ ଉଠିପାର ନଥିଲା ।

ସୁଇଜରଲ୍ୟାଣ୍ଡର ମୁଏଣ୍ଡି ଅଞ୍ଚଳର ଜଣେ ଅଧିବାସୀ ଆଣ୍ଟୋନିଓ ଡୋରଗ୍ ୧୮୦୪ ମସିହାରେ ପ୍ରାୟ ୧୬୦ କି. ଗ୍ରା. ଓଜନର ଖଣ୍ଡେ ପଥରକୁ ଉପରକୁ ଟେକି ୨୯ ଫୁଟରୁ ଅଧିକ ଉଚ୍ଚକୁ ଫିଙ୍ଗି ଦେଇ ପାରିଥିଲେ ।

ଜନ୍ ମାସିସ୍ ନାମରେ ଜଣେ ବ୍ୟକ୍ତି ତାଙ୍କ ଦାନ୍ତରେ ୧୧୩ ଟନ ଓଜନର ଏକ ରେଲବାଇ ଲୋକୋମୋଟିଭ୍ ଉଠାଇ ବିଶ୍ୱ ରେକର୍ଡ ସୃଷ୍ଟି କରି ପାରିଥିଲେ । ବେଲଜିୟମ୍‌ର ଏକ ଟେଲିଭିଜନ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରି ୧୮୬ କି:ଗ୍ରା. ଓଜନର ଲୌହଦଣ୍ଡ ଦାନ୍ତରେ ଉଠାଇ ଦେଇଥିଲେ । ଏହି କାର୍ଯ୍ୟକ୍ରମକୁ ସୁଇଡେନ, ଆମେରିକା ଓ ଜାପାନ ଆଦି ଦେଶରେ ପ୍ରସାର କରିଥିଲେ ।

## ଖେଳ ଓ ଖେଳାଳି—

* ଟେଷ୍ଟ କ୍ରିକେଟ ଖେଳାଳିମାନଙ୍କ ମଧ୍ୟରେ ଗୁଣ୍ଡପ୍ପା ବିଶ୍ୱନାଥ ହେଉଛନ୍ତି ସବୁଠାରୁ ଗେଡା, ତାଙ୍କ ଉଚ୍ଚତା ମାତ୍ର ୫ ଫୁଟ ।

* ପୃଥିବୀର ସବୁଠାରୁ ଉଚ୍ଚତମ ଖେଳାଳି ହେଉଛନ୍ତି ଏ. ଟି. ସି. ଏଲମ୍, ତାଙ୍କର ଉଚ୍ଚତା ୬ ଫୁଟ ସାତେ ଦଶଇଞ୍ଚ ।
* ସବୁଠାରୁ ଓଜନଦାର ଖେଳାଳି ଥିଲେ ଡବ୍ଲ୍ୟୁ ଫୋଲକ୍ । ତାଙ୍କର ଓଜନ ଥିଲା ୩୧୨ ପାଉଣ୍ଡ ।
* ସବୁଠାରୁ କମ୍ ଓଜନର ଖେଳାଳି ହେଉଛନ୍ତି ଜୋହନ ଓ୍ୱିଜ୍ଡ଼ନ । ତାଙ୍କର ଓଜନ ଥିଲା ମାତ୍ର ୯୮ ପାଉଣ୍ଡ । ନଜର କ୍ଷୀଣ ଓ ପତଳା ଶରୀର ଯୋଗୁଁ ସେ ଦ୍ରୁତ ଗତିରେ ବୋଲିଂ କରିପାରୁଥିଲେ । ଏପରିକି ଗୋଟିଏ ଖେଳରେ ସେ ୧୦ ଜଣ ଖେଳାଳିଙ୍କୁ ଗୋଟିଏ ଇଂନିସ୍‌ରେ ବୋଲଡ୍ ଆଉଟ୍ କରି ଦେଇଥିଲେ ।

## ପୃଥିବୀର ଢେଙ୍ଗାଲୋକ—

* ଅଷ୍ଟ୍ରେଲିଆର 'ଢେକଲ' ହେଉଛନ୍ତି ସମଗ୍ର ପୃଥିବୀରେ ଢେଙ୍ଗା ଲୋକ । ତାଙ୍କର ଉଚ୍ଚତା ୮ଫୁଟ ୭ ଇଞ୍ଚ ।
* ମୋଜିମ୍ବିକ୍‌ର ଗାବ୍ରିଏଲ ମୋଢେନଙ୍କ ଉଚ୍ଚତା ହେଉଛି ୮ଫୁଟ ୬ଇଞ୍ଚ୍ । ଢେଙ୍ଗା ଲୋକମାନଙ୍କ ମଧ୍ୟରେ ତାଙ୍କ ସ୍ଥାନ ୨ୟ ।
* ଚିକାଗୋରେ ବାସ କରୁଥିବା ଡେଣ୍ଟନ୍ ମୋଣ୍ଟନର ଅଧିବାସୀ ଜନ୍-କୋହେଲର ଢେଙ୍ଗା ଲୋକମାନଙ୍କ ମଧ୍ୟରେ ୩ୟ ସ୍ଥାନ ଅଧିକାର କରିଛନ୍ତି । ତାଙ୍କର ଉଚ୍ଚତା ୮ଫୁଟ ୨ଇଞ୍ଚ ଏବଂ ତାଙ୍କ ଜାଆଁଳା ଭଉଣୀଟିର ଉଚ୍ଚତା ହେଉଛି ୫ଫୁଟ ୮ଇଞ୍ଚ ।

## ସବୁଠାରୁ ଧନୀଲୋକ—

ଆମେରିକାର 'ପଲଗେଟି' ପୃଥିବୀରେ ସମସ୍ତଙ୍କଠାରୁ ଧନୀ ଲୋକ ବୋଲି ଜଣାଯାଇଛି । ତାଙ୍କ ସମ୍ପତ୍ତିର ଆନୁମାନିକ ମୂଲ୍ୟ ହେଉଛି ୧୩୩୮୦୦୦୦୦୦ ଡଲାର । ସେ ଇଂଲଣ୍ଡରେ ଅବସ୍ଥାନ କରୁଛନ୍ତି ।

## ଦାଢ଼ି ବଢ଼ୁ ହେଉଛି—

କୈମ୍ବ୍ରିଜଶାୟରର ଗ୍ରାଉଣ୍ଡସ୍ ଏଭେନ୍ୟୁ ନିବାସୀ ରେଗ୍ ଜଣେ ଟାକ୍ସି ଡ୍ରାଇଭର । ତାଙ୍କ ମୁହଁର ଦାଢ଼ି ଏତେ କ୍ଷୀପ୍ର ଗତିରେ ବଢୁଥିଲା ଯେ, ସେ ଦିନକୁ ଦୁଇଥର ଲେଖାଏଁ ଦାଢ଼ି କାଟୁଥିଲେ । ସେଇ ସହରରେ ଚନ୍ଦା ମୁଣ୍ଡିଆ ଲୋକଙ୍କ ପାଇଁ ପରଚୁଲା ତିଆରି କରୁଥିବା ଗୋଟିଏ କମ୍ପାନୀ ଥାଏ । ରେଗ୍ ନଜର ଦାଢ଼ି ବିକ୍ରି କରିବା ପାଇଁ ସେଇ କମ୍ପାନୀ ସାଙ୍ଗରେ କବାବ କଲେ ।

ବାଘ ଆଉ ଏମିତି ଦାନ୍ତ ତାଙ୍କୁ ଅଡୁଆ ହେଲନି । ବରଂ ଦାନ୍ତ ବେଗରେ ବଢ଼ାଇବା ପାଇଁ ସେ ରସାୟନିକ ଜିନିଷମାନ ବ୍ୟବହାର କଲେ । ତାପରେ ସେ ପ୍ରତିମାସରେ ଦାନ୍ତ ବିକ୍ରି କରି ପ୍ରାୟ ଦୁଇ ଶହ ଟଙ୍କା ପାଇଲେ ।

## ମୌନର ମୂଲ୍ୟ—

ନ୍ୟୁୟର୍କର ଜଣେ ସ୍ତ୍ରୀଲୋକ କେବଳ ମୌନ ରହି ବର୍ଷକୁ ୪୦ ହଜାର ଡଲାର ଦରମା ପାଉଛନ୍ତି । ତାଙ୍କର କାମ ହେଲା ପ୍ରତିଦିନ ରାତିରେ ସେ ଗୋଟିଏ ରଙ୍ଗମଞ୍ଚରେ ଚୁପ୍ ହୋଇ ଠିଆ ହେବେ ଏବଂ ଜଣେ ହାସ୍ୟ ଅଭିନେତା ତାଙ୍କୁ ହସାଇବା ପାଇଁ ବାରମ୍ବାର ଚେଷ୍ଟା କରିବେ । ହାସ୍ୟ ଅଭିନେତା ଯେତେ ଚେଷ୍ଟା କଲେ ବି ତାଙ୍କ ଓଠରେ ମୃଦୁ ହସ ଟିକେବି ଫୁଟି ଉଠେନି । ଏହି ମୌନ ରହିବା ସମ୍ପର୍କରେ ତାଙ୍କୁ ପଚାରି ଯିବାରୁ ସେ କହିଲେ, ଏଇଟା ସେତେ କଷ୍ଟ-ସାଧ୍ୟ ନୁହେଁ । କାରଣ ମଞ୍ଚ ଉପରେ ଥିବାବେଳେ ମୁଁ ମୋର ଧ୍ୟାନ ଧାରଣା ଆଦି ଗୋଟିଏ ସ୍ଥିର ବସ୍ତୁ ଉପରେ କେନ୍ଦ୍ରୀଭୂତ କରିଥାଏ । ଫଳରେ ମୋ ଚତୁଃପାର୍ଶ୍ୱରେ ଘଟିଯାଉଥିବା ଘଟଣା ସମ୍ପର୍କରେ ମୁଁ କିଛିହେଲେ ଜାଣି ପାରେନା ।

## ସାପଙ୍କ ମେଳରେ ୭୦ ଘଣ୍ଟା—

ଆଫ୍ରିକାର ପୋର୍ଟ ଏଲିଜାବେଥସ୍ଥିତ ଏକ ଚିଡ଼ିଆଖାନାରେ ଜନ୍ ନାମକ ଜଣେ ବ୍ୟକ୍ତି ସାପମାନଙ୍କର ଦେଖାଶୁଣା କରନ୍ତି । ଥରେ ସେ ଗୋଟିଏ କୋଠରୀ ମଧ୍ୟରେ ବିଷଧର ସାପମାନଙ୍କ ମେଳରେ ୭୦ ଘଣ୍ଟା କଟାଇ ବିଶ୍ୱରେକର୍ଡ ସୃଷ୍ଟି କରିଥିଲେ । ତାଙ୍କୁ ଅନେକ ଥର ସାପ କାମୁଡ଼ିଲେଣି । ହେଲେ ବିଷ ତାଙ୍କୁ ଧରୁନି । ଏପରିକି ସାପ କାମୁଡ଼ିଥିବା ଲୋକଙ୍କ କ୍ଷତ ସ୍ଥାନରେ ମୁହଁ ଲଗାଇ ବିଷ ଟାଣିବାରେ ସେ ବିଶେଷ ଧୂରନ୍ଧର ।

## ସାପ ପାଳିବା ସହଜ—

୧୯୭୬ ମସିହା ନଭେମ୍ବର ମାସରେ ସର୍ପ ବିଦ୍ୟା ସମ୍ପର୍କୀୟ ଅନ୍ତର୍ଜାତୀୟ ସମ୍ମିଳନୀ ଦକ୍ଷିଣ ଆମେରିକାସ୍ଥ ଭେଣ୍ଟୁଆଲାର କେରାକାସ୍ଠାରେ ଅନୁଷ୍ଠିତ ହୋଇଥିଲା । ଏଥିରେ ଭାରତ, ଆମେରିକା ଓ ଜାପାନ ସମେତ ବିଭିନ୍ନ ଦେଶରୁ ପ୍ରାୟ ୨୦୦ ସର୍ପ ବିଦ୍ୟା ବିଶେଷଜ୍ଞ ଯୋଗ ଦେଇଥିଲେ ।

ଏହି ସମ୍ମିଳନୀରେ ଉଇଲିୟମ ହାଷ୍ଟ ନାମକ ଜଣେ ବ୍ୟକ୍ତି ଭାରତୀୟ କଳାନାଗର ପାଟିରେ ଅଙ୍ଗୁଠି ପୁରାଇ ତା ଦାନ୍ତରୁ ବିଷ ବାହାର କରିଜାଣିବା

ଫଳରେ ସମ୍ମିଳନୀ ମଣ୍ଡପରେ ଗୋଟାଏ ଚହଳ ପଡିଯାଇଥିଲା ।

ବିଷଧର ସର୍ପ ପାଳନ କରିବା ଢ଼ାଷ୍ଟଙ୍କର ଏକ ସଉକ । ତାଙ୍କ ଘରେ ସେ ଦେଶୀ ବିଦେଶୀ ଅନେକ ପ୍ରକାରର ସାପ ପୋଷିଛନ୍ତି । ତାଙ୍କୁ ବିଭିନ୍ନ ସମୟରେ ୧୨୩ ଥର ବିଷାକ୍ତ ସାପ କାମୁଡ଼ିଲେଣି, ତଥାପି ତାଙ୍କର କିଛି କ୍ଷତି ହୋଇନାହିଁ ।

## କଣ୍ଟା ବିଛଣାରେ ୨୫ ଘଣ୍ଟା—

ଉତ୍ତର ଆମେରିକାର ଓହିଓଠାରେ ଉର୍ଣ୍ଣନକ୍ରେଗ୍ ନାମରେ ଜଣେ ବ୍ୟକ୍ତି କଣ୍ଟାର ଏକ ବିଛଣାରେ ୨୫ ଘଣ୍ଟା ୨୦ ମିନିଟ ୧୫ ସେକେଣ୍ଡ ଶୋଇ ପୃଥିବୀରେ ରେକର୍ଡ ସୃଷ୍ଟି କରିଛନ୍ତି । କ୍ରେଗ୍‌ଙ୍କର ବୟସ ୩୯ ଏବଂ ସେ ୩ଟି ସନ୍ତାନର ଜନକ । ଓହିଓର ଓଷ୍ଟରଠାରେ ଥିବା ଏକ କମର୍ସ ଅଫିସ ଭିତରେ ସେ ଏହି ଅଦ୍ଭୁତ କାର୍ଯ୍ୟ ସମ୍ପାଦନ କରିଥିଲେ ।

ଅଷ୍ଟ୍ରେଲିଆର ଜଣେ ବ୍ୟକ୍ତି ଏହିପରି ଏକ କଣ୍ଟା ବିଛଣାରେ ୨୫ଘଣ୍ଟା ୯ ମିନଟ ସମୟ ଶୋଇ ରହିଥିଲେ ।

## ବରଫ ତଳେ ତିନି ମାସ—

କାଶ୍ମୀରର ଶ୍ରୀ ରସୁଲ ଯୋଦ୍ଧା ନାମରେ ଜଣେ ବ୍ୟକ୍ତି ଏକ ବରଫ ଝଡର ସମ୍ମୁଖୀନ ହୋଇ ବରଫ ତଳେ ପୋତି ହୋଇ ରହିଗଲେ । ଅଖିଆ ଅପିଆ ଦୀର୍ଘ ୩ ମାସ ବରଫ ତଳେ ରହିବା ପରେ ତାଙ୍କୁ ସେଠାରୁ ଉଦ୍ଧାର କରାଯାଇ ଡାକ୍ତରଖାନାକୁ ପଠାଯାଇଥିଲା ।

## ଡାକ ଟିକେଟ ପାଇଁ ହତ୍ୟା—

୧୮୯୨ ମସିହାରେ ଫ୍ରାନ୍‌ସର ଗାଷ୍ଟାନ ଲେରେକ୍‌ସ ନାମକ ଜଣେ ଡାକ ଟିକେଟ ସଂଗ୍ରାହକଙ୍କ ପାଖରେ ହାୱାଇ ଦେଶର ଗୋଟିଏ ବିରଳ ଡାକ ଟିକେଟ ଥିଲା । ହେକ୍ଟର ଗିରେ ନାମରେ ତାଙ୍କର ଜଣେ ବନ୍ଧୁ ସେଇ ଟିକେଟଟି କିଣିନେବାକୁ ଖୁବ ଚେଷ୍ଟା କଲେ । ହେଲେ ଗାଷ୍ଟନ ସେ ଟିକେଟ୍‌ଟି ବିକ୍ରି କରିବେ ନାହିଁ ବୋଲି ଏକକଥାକ ଶୁଣାଇ ଦେଲେ । ତେଣୁ ହେକ୍ଟର ଗାଷ୍ଟାନଙ୍କୁ ହତ୍ୟାକରି ସେହି ଟିକେଟ୍‌ଟି ନେଇଗଲେ । ସାମାନ୍ୟ ଗୋଟିଏ ଟିକେଟ ପାଇଁ ଗୋଟିଏ ମୂଲ୍ୟବାନ ଜୀବନ ଚାଲିଗଲା ।

## ଦୀର୍ଘତମ ଶୋଭାଯାତ୍ରା—

ଚୀନର ଜଣେ ଜେନେରଲ ସି. ଚୁନଙ୍କ ଶବ ଶୋଭାଯାତ୍ରା ଥିଲା ସମଗ୍ର ପୃଥିବୀରେ ବୃହତ୍ତମ । ୧୯୧୨ ମସିହା ଜୁନ ୨ ତାରିଖରୁ ଏହି ଶବ ଶୋଭାଯାତ୍ରା ପେକିଂରୁ ବାହାରି ସିକିଆଙ୍ଗ ଅଭିମୁଖେ ଯାତ୍ରା କରିଥିଲା ଏବଂ ୧୯୧୩ ମସିହା ଜୁନ ୧ ତାରିଖରେ ଶୋଭାଯାତ୍ରାର ଶେଷହେଲା । ପେକିଂଠାରୁ ସିକିଆଙ୍ଗର ଦୂରତ୍ୱ ହେଉଛି ୨୩୦୦ ମାଇଲ । ଏହି ପଥକୁ ବର୍ଷକ ମଧ୍ୟରେ ଅତିକ୍ରମ କରିବାକୁ ପଡ଼ିଥିଲା । ଶୋଭାଯାତ୍ରା ଆରମ୍ଭ ପୂର୍ବରୁ ଚୀନର କେତେକ କୃଷକଙ୍କୁ ସିକିଆଙ୍ଗ ଅଭିମୁଖେ ପଠାଯାଇଥିଲା । ଶୋଭାଯାତ୍ରାକାରୀମାନେ ଯେଉଁ ପଥରେ ଯିବେ, ସେହି ପଥ ପାର୍ଶ୍ୱରେ ଖାଦ୍ୟ ଉପଯୋଗୀ ବିଭିନ୍ନ ଖାଦ୍ୟଶସ୍ୟ ଉତ୍ପନ୍ନ କରିବାକୁ ସେମାନଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା ।

## ବ୍ୟକ୍ତି ଓ ବ୍ୟକ୍ତିତ୍ୱ—

- ରାଣୀ ଭିକ୍ଟୋରିଆଙ୍କୁ ୟୁରୋପର ଆଈ ମା' କୁହାଯାଏ ।
- ସମ୍ରାଟ ଅଗଷ୍ଟସ୍ ହେଉଛନ୍ତି ରୋମ୍‌ର ପ୍ରଥମ ଶାସକ ।
- ମହାବୀର ନେପୋଲିଅନ୍ ବାଇଗଣି ରଙ୍ଗକୁ ଖୁବ୍ ଭଲ ପାଉଥିଲେ ।
- ଟଲଷ୍ଟୟ ଖୁବ୍ ଧନୀ ଥିଲେ ମଧ୍ୟ କାଠ ଥାଳିଆ ଓ କାଠ ଚାମଚରେ ଖାଉଥିଲେ ।
- ହିନ୍ଦୀ ସାହିତ୍ୟର ପ୍ରସିଦ୍ଧ କବି କବୀର ଦାସ ଆଦୌ ପାଠ ପଢ଼ି ନଥିଲେ ।
- ମହାତ୍ମାଗାନ୍ଧି କେବେ ଉଡ଼ାଜାହାଜରେ ବସି ନଥିଲେ ।

## ସେମାନେ ସ୍ମରଣୀୟ—

* କଲିକତାର ଶ୍ରୀ ନବୀନ ଚନ୍ଦ୍ର ଦାସ ୧୮୬୯ ମସିହା ଏପ୍ରିଲ ୧୩ ତାରିଖ ଦିନ ସର୍ବପ୍ରଥମେ ରସଗୋଲା ପ୍ରସ୍ତୁତ କରିଥିଲେ ।
* ଭାରତର ପ୍ରଥମ ମହିଳା ଡାକ୍ତର—କାଦମ୍ବିନୀ ଗାଙ୍ଗୁଲି ।
* ମିଲିଟାରୀ ଟ୍ୟାଙ୍କ୍ ସୁଇନ୍‌ଟନଙ୍କ ଦ୍ୱାରା ଉଦ୍ଭାବିତ ହୋଇଥିଲା ।
* ସାର୍ ଏଡଓ୍ୱାର୍ଡ ଲଟେନ୍‌ସ ନୂଆ ଦିଲ୍ଲୀର ନକ୍ସା ପ୍ରସ୍ତୁତ କରିଥିଲେ ।
* ଜନ୍ ଲାଉଡ ବଲ୍‌ପଏଣ୍ଟ ପେନ୍ ଉଦ୍ଭାବନ କରିଥିଲେ ।
* ପିଟର ନାମକ ଜଣେ ଭାରତୀୟ ସର୍ବପ୍ରଥମେ ଇଂଲଣ୍ଡ ମାଟିରେ ପାଦ ଦେଇଥିଲେ । ତାଙ୍କପରେ ଲକ୍ଷ୍ନୌର ଶେଖମଲ ନାମକ ଜଣେ ଶାସ୍ତ୍ରଜ୍ଞ ବ୍ରାହ୍ମଣ ଇଂଲଣ୍ଡ ଯାଇଥିଲେ ।

## ଏଇ ଜଣକ ବଦମାସ—

ପୋପ୍‌ଲିଓ ୧୨ଶ, ୧୮୨୫ ମସିହାରେ ପାପାଲ ଷ୍ଟେଟସ୍‌ର ଗୋଟିଏ ଜେଲ ପରିଦର୍ଶନ କରି ପ୍ରତ୍ୟେକ ବନ୍ଦୀଙ୍କୁ ସେମାନଙ୍କ ଅପରାଧ ସମ୍ପର୍କରେ ପଚାରିଥିଲେ, କିନ୍ତୁ ସମସ୍ତଙ୍କଠାରୁ ସେଇ ଗୋଟିଏ ଉତ୍ତର ପାଇଲେ ଯେ, ସେମାନେ ନିର୍ଦ୍ଦୋଷ । କେବଳ ଜଣେ ମାତ୍ର ବନ୍ଦୀ ନିଜର ଦୋଷ ସ୍ୱୀକାର କରିଗଲା ।

ଏକଥା ଶୁଣି ପୋପ୍ ଜେଲ ସୁପରିଣ୍ଟେଣ୍ଡେଣ୍ଟଙ୍କୁ କହିଲେ—ଏଇ ଜଣକ ହେଉଛି ବଦମାସ । ଆଉ ସମସ୍ତେ ଭଦ୍ରଲୋକ । ତେଣୁ ମୋର ଇଚ୍ଛା, ଏତେ ଭଦ୍ରଲୋକଙ୍କ ଭିତରେ ଗୋଟାଏ ବଦମାସ ରହିବା ଉଚିତ ନୁହେଁ । ତେଣୁ ତାକୁ ଶୀଘ୍ର ଏଠାରୁ ବାହାର କରିନିଅ ।

## ମୌନ ପ୍ରତିବାଦ—

ଆମେରିକାର ପ୍ରଥମ ରାଷ୍ଟ୍ରପତି ଜର୍ଜ ୱାସିଂଟନଙ୍କ ପ୍ରତି କୃତଜ୍ଞତା ପ୍ରଦର୍ଶନ ଉଦ୍ଦେଶ୍ୟରେ, ଆମେରିକାର ରାଜଧାନୀକୁ ୱାସିଂଟନ ନାମରେ ନାମିତ କରାଗଲା । ୱାସିଂଟନ କିନ୍ତୁ ଏଥିରେ ଖୁବ୍ ପ୍ରତିବାଦ କଲେ । ହେଲେ ତାଙ୍କ କଥା କେହି ଶୁଣିଲେ ନାହିଁ । ତେଣୁ ସେ ଏହାର ମୌନ ପ୍ରତିବାଦ ସ୍ୱରୂପ ନିଜ ଭାଷଣ କିମ୍ବା ଲେଖାରେ କେବେହେଲେ ୱାସିଂଟନ ନାମ ବ୍ୟବହାର କରୁନଥିଲେ । ଦରକାର ହେଲେ ସେ ଆମେରିକାର ରାଜଧାନୀକୁ ଫେଡେରାଲ-ସିଟି ବୋଲି କହୁଥିଲେ ।

## ଥରେ ବି ଧନ୍ୟବାଦ ପାଇନି—

ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାର ନେଟାଲରେ ରହୁଥିବା ବେଳେ, ଥରେ ଗୋଟିଏ ହୋଟେଲରେ ଖାଇ ସାରିବା ପରେ ପରଶୁଣିକୁ ଧନ୍ୟବାଦ ଦେଲେ ।

ଗାନ୍ଧୀଙ୍କଠାରୁ ଧନ୍ୟବାଦ ପାଇ ପରଶୁଣିଟି ଖୁସିରେ କହିଲା—ମହାଶୟ, ମୁଁ ଆପଣଙ୍କୁ ସବୁଦିନେ ମନେ ରଖିବି । ଏଇ ହୋଟେଲରେ ମୁଁ ୨୫ ବର୍ଷ ହେଲା ରହିଲିଣି । ହେଲେ କେହି ଥରେ ବି ମୋତେ ଧନ୍ୟବାଦ ଦେଇ ନାହାନ୍ତି ।

## ପୂର୍ବପୁରୁଷଙ୍କ ଭାଷଣ ଶୁଣନ୍ତୁ—

ଇଂଲଣ୍ଡର ପ୍ରସିଦ୍ଧ ଦାର୍ଶନିକ ବାର୍ଟ୍ରାଣ୍ଡ ରସେଲ ଦେଖିବାକୁ ଟିକେ ଅସୁନ୍ଦର ଥିଲେ । ଥରେ ସେ ଗୋଟିଏ ସଭାରେ ଭାଷଣ ଦେଉଥିବା ବେଳେ ଜଣେ ଶ୍ରୋତା ତାଙ୍କୁ ବ୍ୟଙ୍ଗ କରି କହିଲେ—ଠିକ୍ ମାଙ୍କଡ଼ ପରି ଦିଶୁଛନ୍ତି ।

ରସେଲଙ୍କ କାନରେ କଥାଟା ପଡ଼ ଯିବାରୁ ସେ ଭାଷଣ ବନ୍ଦ କରି ଆକ୍ଷେପ କରୁଥିବା ଭଦ୍ର ଲୋକଙ୍କୁ ଉତ୍ତର କହିଲେ, ଆପଣ ନିଶ୍ଚୟ ଜାଣିଥିବେ ଯେ, ମଣିଷର ପୂର୍ବପୁରୁଷ ମାଙ୍କଡ଼ ଥିଲେ । ତେଣୁ ଚୁପ୍ ହୋଇ ଆପଣଙ୍କ ପୂର୍ବ ପୁରୁଷଙ୍କ ଭାଷଣ ଶୁଣନ୍ତୁ ।

## ଭଗବାନ ପରା ନକଲ କଲେ—

ଦିନେ ଜଣେ ଲୋକ ବିନୋବାଜୀଙ୍କୁ କହିଲେ—ବାବା, ଏବେ ଲୋକଙ୍କ ଭିତରେ ନକଲ କରିବା ରୋଗଟା ଖୁବ୍ ବଢ଼ି ଯାଇଛି । ବିନୋବାଜୀ ଟିକିଏ ହସି ଦେଇ କହିଲେ-ଆରେ ବାବୁ, ନିଜେ ଭଗବାନ ପରା ନକଲ କରଣାରେ ଓସ୍ତାଦ୍ । ନ ହେଲେ ମାଙ୍କଡ଼କୁ ଦେଖି ମଣିଷ ଗଢ଼ିଥାନ୍ତେ କେମିତି ?

## ସମୟାନୁବର୍ତ୍ତିତା—

ସମୟାନୁବର୍ତ୍ତିତା ପାଇଁ ନେପୋଲିଅନ୍ ଚିରସ୍ମରଣୀୟ ରହିବେ । ପ୍ରତ୍ୟେକ କାମ ସେ ଠିକ୍ ସମୟରେ କରିପାରୁଥିଲେ । ଥରେ ସେ କହିଥିଲେ- ମୁଁ ଯୁଦ୍ଧରେ ହାରି ରାଜ୍ୟ ହରାଇ ପାରେ, ହେଲେ ସମୟ ନଷ୍ଟ କରି ପାରିବି ନାହିଁ । କିନ୍ତୁ ବିଚିତ୍ର କଥା, ଯେଉଁ ନେପୋଲିଅନ ନିଜର ବିବାହ ଦିନ ଗୀର୍ଜାରେ ପହଞ୍ଚିବାକୁ ଦୁଇ ଘଣ୍ଟା ଡେରି କରିଦେଲେ । ବିବାହ ଉତ୍ସବ ପାଇଁ ଯେଉଁ ପାଦ୍ରୀ ଆସିଥିଲେ, ଅପେକ୍ଷା କରି କରି ଏତେ କ୍ଳାନ୍ତ ହୋଇପଡ଼ିଲେ ଯେ, ତାଙ୍କୁ ନିଦ ହୋଇଗଲା ।

## ଶାନ୍ତିର ବାର୍ତ୍ତା--

ଦକ୍ଷିଣ ଆମେରିକାର ଆଣ୍ଡିଜ ପାର୍ବତ୍ୟ ଅଞ୍ଚଳରେ ଚିଲ୍ଲି ଓ ଆର୍ଜେଣ୍ଟାଇନା ରାଜ୍ୟଦ୍ୱୟ ଅବସ୍ଥିତ । ଏହି ଦୁଇ ଦେଶ ସୀମାରେ କଂସାରେ ନିର୍ମିତ ଯୀଶୁ- ଖ୍ରୀଷ୍ଟଙ୍କର ଏକ ବିରାଟ ପ୍ରତିମୂର୍ତ୍ତି ଦଣ୍ଡାୟମାନ । ଏହି ମୂର୍ତ୍ତି ତଳେ ଲେଖାଯାଇଛି- "ଏହି ପାହାଡ଼ ଭୂଷୁଡ଼ି ଧୂଳି ହୋଇ ଯାଉ ପଛକେ, ଜଗତର ତ୍ରାଣ କର୍ତ୍ତା ପ୍ରଭୁ ଯୀଶୁଙ୍କ ପାଦତଳେ ଆମେ ଚିଲ୍ଲୀ ଓ ଆର୍ଜେଣ୍ଟାଇନାର ଅଧିବାସୀମାନେ ଏହି ଶପଥ ନେଉଛୁ ଯେ, ଦୁଇ ରାଜ୍ୟ ଭିତରେ ଶାନ୍ତି ରକ୍ଷା କରି ଚଳିବୁ । ଏହି ପ୍ରତିଜ୍ଞାରୁ କେବେହେଲେ ଟଳିବୁ ନାହିଁ ।

## ମହାପୁରୁଷଙ୍କ ଶେଷ କଥା—

ଯୀଶୁଖ୍ରୀଷ୍ଟଙ୍କୁ ଯେତେବେଳେ କ୍ରୋଧାନ୍ଧ ପୁରୋହିତମାନେ କ୍ରୁଶବିଦ୍ଧ

କରି ହତ୍ୟା କଲେ; ସେତେବେଳେ ସେ କହିଥିଲେ—"ପ୍ରଭୁ ! ଏମାନଙ୍କୁ କ୍ଷମା କର । ଏମାନେ କ'ଣ କରୁଛନ୍ତି ଜାଣି ପାରୁ ନାହାନ୍ତି ।"

ପୃଥିବୀର ପ୍ରଥମ କଥାକାର ଈସପ୍‌ଙ୍କୁ ଯେତେବେଳେ ପାହାଡ ଉପରୁ ତଳକୁ ଫିଙ୍ଗି ଦିଆଗଲା ସେତେବେଳେ ସେ କହିଥିଲେ-ମୋ ଶପ ପରି ମୋତେ ଅସହାୟ ଭବରେ ମାରିଦେଲ ପ୍ରଭୁ ।"

ପ୍ରାର୍ଥନା ସଭାରେ ନାଥୁରାମ ଗଡସେ ବାପୁଙ୍କୁ ଗୁଳିକଲା ପରେ ତାଙ୍କ ପାଟିରୁ ତିନଥର ବାହାରି ପଡିଥିଲା-'ହେ ରାମ୍ ।'

ଜଣେ ଗ୍ରୀକ୍ ସୈନ୍ୟ ମହାନ୍ ବୈଜ୍ଞାନିକ ଆର୍କିମିଡିସଙ୍କୁ ମାରି ଦେବାକୁ ଖଣ୍ଡା ଉଞ୍ଚାଇବାରୁ, ସେ କହିଥିଲେ—ଟିକେ ଅପେକ୍ଷା କର । ମୁଁ ଏଇ ଅଙ୍କଟକ କରିଦିଏ ।"

ଆମେରିକା ରାଷ୍ଟ୍ରପତି ଅବ୍ରାହମ୍ ଲିଙ୍କନ୍‌ଙ୍କୁ ଯେତେବେଳେ ଗୁଳି କରଗଲା, ତାଙ୍କ ପାଟିରୁ ବାହାରି ପଡିଥିଲା—ମୋ ଦେଶ, ମୋ ଆମେରିକା । ନିଗ୍ରୋ ନେତା ମାର୍ଟିନ୍ ଲୁଥର କିଙ୍ଗଙ୍କୁ ହତ୍ୟା କରଗଲା ବେଳେ ସେ କହିଥିଲେ—ପ୍ରଭୁ ଧରଣୀକୁ ରକ୍ଷା କର । ଏଠାର ପ୍ରତ୍ୟେକ ଅଧିବାସୀଙ୍କୁ ଶାନ୍ତି ଦିଅ ।

ଗ୍ରୀସ୍‌ର ପ୍ରସିଦ୍ଧ ନାଟ୍ୟକାର ସୋଫୋକ୍ଲିସ୍ ମୃତ୍ୟୁ ପୂର୍ବରୁ କହିଥିଲେ-ଏ ଧରଣୀର ପ୍ରିୟ ପରିଚିତ ଆଲୋକ ଛାଡି ମୋର ମରିବାକୁ ଇଚ୍ଛା ହୁଏନା ।

## ବୌଦ୍ଧ ଧର୍ମର ପଞ୍ଚଶୀଳ—

- ଜୀବ ହିଂସା କର ନାହିଁ । ଅହିଂସା ଅମୃତର ପଥ ସ୍ୱରୂପ ଏବଂ ହିଂସା ମୃତ୍ୟୁର ଦ୍ୱାର ସ୍ୱରୂପ ।
- ପର ଦ୍ରବ୍ୟ ଅପହରଣ କର ନାହିଁ । କାହାରିକୁ ନିନ୍ଦା କର ନାହିଁ କି ଘୃଣା କର ନାହିଁ ।
- ବ୍ୟଭିଚାର କର ନାହିଁ । ଯେଉଁମାନେ ଅନାଶକ୍ତ, ସେମାନେ ଅମର । ଆସକ୍ତ ମନ ସର୍ବଦା ନିର୍ଜୀବ ।
- ମିଥ୍ୟା କୁହ ନାହିଁ , ଆଚାର ବ୍ୟବହାରରେ ସର୍ବଦା ସଂଯତ ରହ ଏବଂ ମିତାହାର କର ।
- ସୁରାପାନ କର ନାହିଁ । ଏକାଗ୍ରଚିତ୍ତରେ ଯୋଗ ସାଧନା କର । ଯେଉଁମାନେ ସବୁବେଳେ ଧ୍ୟାନନିଷ୍ଠ ଏବଂ ଦୃଢ ପରାକ୍ରମ , ସେହିମାନେ ଶାନ୍ତିମୟ ନିର୍ବାଣ ଲାଭ କରିପାରିବେ ।

## ଜଳ ଦାନବ—

ବୋର୍ଣ୍ଣିଓ ଦ୍ୱୀପର ମହାକାଳ ନଦୀ ନିକଟରେ ଏକ ଜଳ ଦାନବ ବାସ କରେ । ଏହାର ଲମ୍ବ ପ୍ରାୟ ୮୪ ମିଟର । ଗୋରୁ ମୁଣ୍ଡପରି ମୁଣ୍ଡ ଏବଂ ଦେହଟି ସାପ ପରି । ବହୁ ମାରାତ୍ମକ ଅସ୍ତ୍ରଶସ୍ତ୍ର ପ୍ରୟୋଗ କରି ମଧ୍ୟ ଏହାକୁ କେହି ମାରି ପାରୁ ନାହାନ୍ତି ।

ତିବ୍ବତର ଔନ୍ବୋ ହ୍ରଦରେ ଅନ୍ୟ ଏକ ଜଳଦାନବ ବାସ କରେ । ଏହା ଦେଖିବାକୁ ଗୋଟିଏ ଘୋଡାପରି । ବେକଟି କିନ୍ତୁ ଲମ୍ବା ଏବଂ ମୁଣ୍ଡଟି ଦେହ ତୁଳନାରେ ଛୋଟ । ତିବ୍ବତର ଚମରୀ ଗାଈ ବାଘମାନେ ଏହାର ଖାଦ୍ୟ । ଅନୁମାନ କରାଯାଏ ଯେ ପ୍ରାୟ ୩୦ କୋଟି ବର୍ଷତଳେ ତିବ୍ବତ ଏକ ଛୋଟ ହ୍ରଦ ଥିଲା । ଏହି ହ୍ରଦଟି ଶୁଖିଗଲା ପରେ ହୁଏତ ଏକ ବିରାଟକାୟ ଡାଇନୋସର ପଳାଇ ଯିବାକୁ ବାଟ ନପାଇ ଔନ୍ବୋ ହ୍ରଦରେ ରହିଗଲା । ଏହି ଜଳଦାନବଟି ସେଇ ଡାଇନୋସରର ବଂଶଧର ହୋଇପାରେ ।

## ଚମରୀ ଗାଈ—

ପୃଥିବୀର ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ମଧ୍ୟରେ ତିବ୍ବତର ଚମରୀ ଗାଈ ବା ୟାକ୍ ହେଉଛି ଉଚ୍ଚତମ । ଏହା ପ୍ରାୟ ୫୦୦୦ ମିଟର ଉଚ୍ଚ ସ୍ଥାନରେ ବାସକରେ । ଏହାର ଓଜନ ପ୍ରାୟ ୪୫୩.୬ କି ଗ୍ରା: ଏବଂ ଦୈର୍ଘ୍ୟ ୧୪ଫୁଟ ଏହାର ଶିଙ୍ଗ ବଙ୍କା ଓ ପ୍ରାୟ ୧ ମିଟର ଲମ୍ବ । ତା ଦେହର ଦୀର୍ଘ ଲୋମ ତାକୁ ବରଫ ମିଶା ଥଣ୍ଡା ପବନରୁ ରକ୍ଷା କରିଥାଏ । ବଡ ଅଣ୍ଡିରା ୟାକମାନଙ୍କ ବେକରୁ ଝୁଲିପଡିଥିବା ଲୋମ ଭୂମି ସ୍ପର୍ଶକରେ ।

## ବଜ୍ରକାପ୍ତା—

ବଜ୍ରକାପ୍ତାକୁ ସାହେବମାନେ ପେଙ୍ଗୋଲିନ୍ କହିଥାନ୍ତି । ଏହାର ଦେହ ଯାକ କାତିପୂର୍ଣ୍ଣ । କାତିଗୁଡାକ ପୁଣି ଏତେ ଟାଣ ଯେ, ବନ୍ଧୁକ ଗୁଳି ବି ତାକୁ ଫୁଟାଇ ପାରିବନାହିଁ । କୌଣସି ହିଂସ୍ର ଜନ୍ତୁ ଦେଖିଲେ ବଜ୍ରକାପ୍ତା ଏପରି ଜାକିଜୁକି ହୋଇପଡେ ଯେ, ଠିକ୍ ଗୋଟିଏ ପେଣ୍ଡୁ ପରି ଦେଖାଯାଏ । ସାହାରା ମରୁଭୂମି, ଚୀନ, ଶ୍ୟାମଦେଶ, ଇଣ୍ଡୋନେସିଆ, ମାଲୟ ଓ ଭାରତ ପ୍ରଭୃତି ଦେଶରେ ଏମାନେ ଦେଖାଯାନ୍ତି, ସେମାନଙ୍କର ଲମ୍ବ ପ୍ରାୟ ତେରରୁ ତୁଇଫୁଟ ହୋଇଥାଏ । ଏମାନଙ୍କର ଦାନ୍ତ ନ ଥିବାରୁ ଜିଭ ସାହାଯ୍ୟରେ ଉଇ, ପିମ୍ପୁଡି, ପୋକ ପ୍ରଭୃତି ଖାଇଥାଆନ୍ତି । ଉଇହୁଙ୍କା ଭିତରେ ଏମାନେ ଗୋଞ୍ଜିଆ ମୁହଁ ପୂରାଇ ଉଇ ଶୋଷି ଖାଆନ୍ତି । ଗଛରେ ଚଢ଼ି ନାଲି ବା କଳା ଝଡା ମଧ୍ୟ ଖାଇଥାଆନ୍ତି ।

ଅନ୍ୟ ଏକ ଜାତିର ବଜ୍ରକାପ୍ତା ପ୍ରାୟ ୬ ଫୁଟ ଲମ୍ବ ହୋଇଥାନ୍ତି । ଏମାନଙ୍କୁ ରାକ୍ଷସ ବଜ୍ରକାପ୍ତା କୁହାଯାଏ । ଏମାନେ ମାଟିରେ ଗାତଖୋଳି ରହିଥାନ୍ତି ।

ବଜ୍ରକାପ୍ତାର ତଳିପେଟ ଏବଂ କାତି ସନ୍ଧରେ ଛୋଟ ଛୋଟ ଲୋମ ଥାଏ । ମାଟିରେ ଚାଲିଲାବେଳେ ତାର ଲାଞ୍ଜଟି ମାଟିଠାରୁ ଟିକେ ଉପରକୁ ଟେକିହୋଇ ରହିଥାଏ । ଛୁଆ ବଜ୍ରକାପ୍ତା ସେଇ ଲାଞ୍ଜ ଉପରେ ବସି ବୁଲୁଥାଏ ।

ବଜ୍ରକାପ୍ତା ଭଲ ଦେଖିପାରେନି କି ଶୁଣି ବି ପାରେନା । ତେଣୁ ଶତ୍ରୁ କବଳରୁ ରକ୍ଷା ପାଇବାପାଇଁ ସବୁବେଳେ ଚେଷ୍ଟା କରୁଥାଏ ।

ଓଡ଼ିଶାର କେତେକ ଜାତିର ଆଦିବାସୀ ବଜ୍ରକାପ୍ତାର ମାଂସ ଖାନ୍ତି । ଏହା କାତିରେ ତିଆରି ମୁଦି ପିନ୍ଧିଲେ ଅର୍ଶ ଓ ବାତଜ୍ୱର ଭଲହୁଏ ବୋଲି ଲୋକଙ୍କର ବିଶ୍ୱାସ ।

## ଏଚିଡନା—

ଏଚିଡନାର ଜନ୍ମରହସ୍ୟ ବଡ଼ ବିଚିତ୍ର । ମା' ଏଚିଡନା ଥରକେ ଗୋଟିଏ ଅଣ୍ଡା ଦିଏ ଏବଂ ସେଇଟିକୁ ପେଟତଳେ ଥିବା ଗୋଟିଏ ଥଳିରେ ପୁରାଇ ରଖେ । ଛୁଆଟି ଅଣ୍ଡା ଭିତରେ ଥିବାବେଳେ ତା ମୁଣ୍ଡ ଉପରେ ଶିଙ୍ଗ ପରି ଗୋଟିଏ ଦାନ୍ତୁଆ ଜିନିଷ ଥାଏ । ସେଇ ଶିଙ୍ଗ ସାହାଯ୍ୟରେ ସେ ଅଣ୍ଡାର ଖୋଳପା ଫଟାଇ ବାହାରି ଆସେ । ତାପରେ ସେ ମା'ଠାରୁ କ୍ଷୀର ଖାଏ । ଶିଶୁ ଏଚିଡନା ସବୁବେଳେ ମା' ପେଟ ଥଳିରେ ଥାଏ ।

ଏଚିଡନାର ଦେହସାରା ଲୋମ ପୂର୍ଣ୍ଣ ଏବଂ ପିଠି ଉପରେ ଝିଙ୍କ ଦେହ-ପରି କଣ୍ଟା ଥାଏ । ଏମାନେ ଦେଖି ପୋଷା ମାନନ୍ତି ସତ, କିନ୍ତୁ ଏହି କଣ୍ଟା ଯୋଗୁଁ ଏମାନଙ୍କୁ କେହି ପାଳନ୍ତି ନାହିଁ ।

ଏଚିଡନାର ପ୍ରତି ପାଦରେ ୫ଟି ଲେଖାଏଁ ଆଙ୍ଗୁଠି ଏବଂ ପ୍ରତି ଆଙ୍ଗୁଠିରେ ବଡ଼ ବଡ଼ ନଖ ଥାଏ । ଏଇ ନଖ ସାହାଯ୍ୟରେ ସେ ଉଇହୁଙ୍କା, ପିମ୍ପୁଡ଼ିଗାତ ପ୍ରଭୃତି ଖୋଳି ଲମ୍ବ ଜିଭ ସାହାଯ୍ୟରେ ଉଇ ପିମ୍ପୁଡ଼ି ଆଦି ଚାଟି ଖାଏ ।

ଅନ୍ୟ ଏକ ପ୍ରକାରର ଏଚିଡନା ଲମ୍ବରେ ପ୍ରାୟ ୪ଫୁଟ ହୋଇଥାଏ । ଏହା ପାଦରେ କିନ୍ତୁ ୩ଟି ଲେଖାଏଁ ନଖ ଥାଏ । ଯେତେ ଦୂରରେ ଉଇ କିମ୍ବା ପିମ୍ପୁଡ଼ିଥିଲେ ମଧ୍ୟ ଏଚିଡନା ଗନ୍ଧବାରି ସେଠାରେ ପହଞ୍ଚିଯାଏ ।

## ବଡଲ ଜୀବ-ଶ୍ଲଥ—

ଆମେରିକାରେ ଶ୍ଳଥ ନାମରେ ଏକପ୍ରକାର ସ୍ତନ୍ୟପାୟୀ ପ୍ରାଣୀ ଦେଖାଯାନ୍ତି । ଜୀବନଯାକ ଏମାନେ ଗଛ ଡାଳରେ ରହିଥାନ୍ତି । ଏମାନେ ପାଣି ପିଉ ନଥିବାରୁ ମାଟି ଉପରକୁ ଆସିବା ଦରକାର ପଡେନ । ଏମାନଙ୍କ ଦେହରେ ଶିଉଳି ବଢି ସବୁଜ ବର୍ଣ୍ଣ ଦେଖାଯାଏ । ତେଣୁ ଶତ୍ରୁ ଏମାନଙ୍କୁ ସହଜରେ ଚିହ୍ନି ପାରନ୍ତି ନାହିଁ ।

## ମାଂସାଶୀ ଭଲ୍ଲୁକ—

ପୃଥିବୀର ସବୁଠାରୁ ବଡ ମାଂସାଶୀ ପ୍ରାଣୀ ହେଉଛି ଆଲସ୍କାର ଧୂସର ବର୍ଣ୍ଣର ଭଲ୍ଲୁକ । ଗୋଟିଏ ପୁରୁଷ ଭଲ୍ଲୁକ ତାର ପଛ ଦୁଇ ଗୋଡରେ ଠିଆ ହେଲେ ୯ ଫୁଟ ଉଚ୍ଚ ହୋଇଥାଏ । ଏହାର ଓଜନ ପ୍ରାୟ ୧୫୦୦ ପାଉଣ୍ଡ । ଗୋଟିଏ ବାଘ ବା ସିଂହର ଓଜନଠାରୁ ଏହା ୩ ଗୁଣ ଅଧିକ ।

## ବିରାଟକାୟ ମାଛ—

୧୯୭୪ ମସିହା ଜାନୁଆରୀ ୪ ତାରିଖ ଦିନ କୋଝିକୋଡ ଠାରୁ ୧୮ କି. ମି. ଦୂରବର୍ତ୍ତୀ ଅତଳସାଗର ଉପକୂଳରେ ଅବସ୍ଥିତ ସାରପାନ ଗଳିଠାରେ ୧୫ଟନ୍ ଓଜନର ଏକ ବିରାଟକାୟ ମାଛ ଧରାଯାଇଥିଲା । ଏହାର ଲମ୍ବ ଥିଲା ୯ ମିଟର ଏବଂ ଉଚ୍ଚତା ୧.୨ ମିଟର । ମାଲବାର ଉପକୂଳରେ ଏତେବଡ ମାଛ କେବେ ଧରାଯାଇ ନଥିଲା । ମାଛଟି ଦେଖିବାକୁ ବହୁ ଜନସମାଗମ ହେବାରୁ ସେମାନଙ୍କୁ ନିୟନ୍ତ୍ରଣ କରିବାକୁ ପୋଲିସ୍ ବାହିନୀ ଆସିଥିଲେ ।

## ବିଚିତ୍ର ମାଛ—

ଦକ୍ଷିଣ ଆମେରିକାର ଉପକୂଳବର୍ତ୍ତୀ ସମୁଦ୍ରରେ Marine cat fish ନାମରେ ଏକପ୍ରକାର କଣ୍ଟିଆ ଜାତର ମାଛ ବାସ କରନ୍ତି । ଏହି ଜାତିର ମା' ମାଛ ଅଣ୍ଡା ଦେଲାପରେ ପୁରୁଷମାଛ ଅଣ୍ଡାଗୁଡିକ ପାଟିରେ ପୂରାଇ ପ୍ରାୟ ଦୁଇ ମାସ ପର୍ଯ୍ୟନ୍ତ ଅଖିଆ ଅପିଆ ବୁଲୁଥାଏ । ଅଣ୍ଡାଗୁଡିକ ଫାଟିବା ପରେ, ସେଥିରୁ ଛୁଆ ବାହାରି ବାହାରକୁ ଚାଲିଆସନ୍ତି । ଅନେକ ସମୟରେ ସେମାନେ ବାପ ପାଟିରେ କେତେଦିନ ରହିବା ପରେ ବାହାରକୁ ଆସନ୍ତି ।

## ମାଛଙ୍କ ଅଦ୍ଭୁତ କ୍ଷମତା—

ଆଟଲାଣ୍ଟିକ ମହାସାଗର ମଧ୍ୟରେ ଥିବା ବରମୁଣ୍ଡା ଦ୍ୱୀପପୁଞ୍ଜର

ଦକ୍ଷିଣର ଗୋଟିଏ ସ୍ଥାନକୁ ୟୁରୋପ ଓ ଆମେରିକାର ବିଭିନ୍ନ ନଦନଦୀରୁ ପ୍ରତିବର୍ଷ ଗୋଟିଏ ଜାତର ମାଛ ଡିମ୍ବ ଦେବାକୁ ଆସିଥାନ୍ତି । ମା'ମାଛମାନେ ଡିମ୍ବଦେଇ ସାରିଲାପରେ ନିଜ ନିଜ ଦେଶକୁ ଫେରିଯାନ୍ତି । ଡିମ୍ବଗୁଡ଼ିକରୁ ଛୁଆ ବାହାରିବାପରେ ସେମାନଙ୍କ ବାପା ମା'ମାନେ ଯେଉଁ ପଥରେ ଆସିଥାନ୍ତି; ସେମାନେ ସେଇ ପଥରେ ଫେରିଯାନ୍ତି, କିନ୍ତୁ ଆଶ୍ଚର୍ଯ୍ୟର କଥା, କେବେହେଲେ ୟୁରୋପର ମାଛ ଆମେରିକାକୁ କି ଆମେରିକା ମାଛ ୟୁରୋପକୁ ଚାଲିଯାନ୍ତି ନାହିଁ ।

## ବିଚିତ୍ର ବେଙ୍ଗ ...

ଦକ୍ଷିଣ ପଶ୍ଚିମ କଲମ୍ବିଆରେ ବ୍ଲୁମ୍ବର୍ଗପଟୋଡ ନାମରେ(Blumber stoad ଏକ ଜାତିର ବେଙ୍ଗ ବାସ କରନ୍ତି । ଏମାନଙ୍କର ଲମ୍ବ ପ୍ରାୟ ୯ଇଞ୍ଚ ହୋଇଥାଏ । ସାପକାତି ଛଡ଼ାଇଲା ପରି ଏହି ବେଙ୍ଗ ୩ ଦିନରୁ ୧୦ଦିନ ମଧ୍ୟରେ ନିଜ ଦେହର ଚମ ବଦଳାଏ । ପ୍ରଥମେ ସେ ଗୋଡହାତ ଲମ୍ବାଇ ଛାଟିପିଟି ହୁଏ । ଫଳରେ ତା ଦେହର ଉପର ଚମଟି ଆପେ ଆପେ ବାହାରିଯାଏ । ତାପରେ ବେଙ୍ଗଟି ସେହି ଚମଟିକୁ ଗୁଡେଇ ଗୁଡେଇ ଗିଳିଦିଏ । ଏହି ଚମ କିନ୍ତୁ ଏଗିରି ଖୋଳ ।

## ଲେଞ୍ଜହୀନ ମାଙ୍କଡ଼—

ମେଘାଳୟର ଘନ ଜଙ୍ଗଲରେ ପ୍ରାଣୀ ବଞ୍ଜାନୀମାନେ ଏକ ପ୍ରକାର ଲାଙ୍ଗୁଡ଼ ନଥିବା ମାଙ୍କଡ ଦେଖିବାକୁ ପାଇଛନ୍ତି । ଏହି ମାଙ୍କଡମାନେ ଦଳଦଳ ହୋଇ ରହିଥାନ୍ତି । ପ୍ରତି ଦଳରେ ୩।୪ ପୁରୁଷ ଏବଂ ଗୋଟିଏ ସ୍ତ୍ରୀ ମାଙ୍କଡ ଥାଏ । ଏପରି ଲାଞ୍ଜହୀନ ମାଙ୍କଡ ପୃଥିବୀର ଅନ୍ୟ କୌଣସି ଦେଶରେ ଦେଖାଯାନ୍ତି ନାହିଁ ।

## ରାକ୍ଷସ କୁକୁର ବ୍ଲୁବାର୍ଡ—

ବ୍ଲୁବାର୍ଡ କୁକୁରଟି ହେଉଛି ଜର୍ମାନୀର ଗ୍ରେଡନ୍ ଜାତିର । ତାର ମାଲିକ ହେଉଛନ୍ତି ଜଣେ ସାହେବ ବଲ୍ଲମ୍ । ଏହାର ଲମ୍ବ ୧.୮ ମିଟର ଏବଂ ଉଚ୍ଚତା ୧.୨ ମିଟର । ଦେଖିବାକୁ ଠିକ୍ ଗୋଟିଏ ବାଛୁରୀ ଭଳି । ରାକ୍ଷସ ଭଳି ତାର ରୂପ । ଆଗରେ ପଡ଼ିଲେ କାହାକୁ ବି ଛାଡ଼ିଦେବନି । ତାର ପ୍ରତିଦିନର ଖୋରାକ ହେଲା ୪ କିଲୋ ମାଂସ, ୨୪ଟି ଅଣ୍ଡା, ୨ ଲିଟର ଦୁଧ, ୨୪ ଖଣ୍ଡ ରୁଟି ଏବଂ

ହେଲେ ଲୁଟ । ଏଥିପାଇଁ ବ୍ରୁଲମ ସାହେବଙ୍କୁ ପ୍ରତିମାସରେ ୩୫୦୦ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ୁଥାଏ ।

## ଝିଟିପିଟିର କୌଶଳ—

ପ୍ରକୃତି ଯେଉଁସବୁ ଜୀବଙ୍କୁ ଆକସ୍ମିକ ବିପଦରୁ ରକ୍ଷା ପାଇବାପାଇଁ ସୁବିଧା ଦେଇଛି, ସେମାନଙ୍କ ମଧ୍ୟରେ ଝିଟିପିଟି ଅନ୍ୟତମ । ଶତ୍ରୁକୁ ଦେଖିଲା ମାତ୍ରେ ସେ ତାର ଲାଞ୍ଜରେ ଥିବା ଏକ ସ୍ୱତନ୍ତ୍ର ମାଂସପେଶୀଦ୍ୱାରା ଲାଞ୍ଜଟି ଛିଣ୍ଡାଇ ପକାଏ । ଛିଣ୍ଡା ଲାଞ୍ଜଟି କିଛି ସମୟ ଛଟପଟ ହୁଏ, ଶତ୍ରୁ ଯେତିକି ଲାଞ୍ଜକୁ ଦେଖୁଥିବା ବେଳେ ଝିଟିପିଟି ସେଠାରୁ ଖସିଯାଏ । କିଛିଦିନ ପରେ ତାର ପୁଣି ନୂଆ ଲାଞ୍ଜ କଅଁଳି ଉଠେ ।

## ମଶା କାମୁଡ଼ନ୍ତି କାହିଁକି ?—

ମଣିଷ ରକ୍ତରେ 'ସିରୋଟୋନିନ୍' ଓ 'ନୋର ଫ୍ରାଇନ୍‌ଫିନ' ନାମକ ଦୁଇଟି ରସାୟନକ ପଦାର୍ଥ ଅଛି । ଏହି ଦୁଇଟି ପଦାର୍ଥର ଅଭାବ ହେଲେ ମଶାମାନେ ବଞ୍ଚିପାରନ୍ତି ନାହିଁ । ତେଣୁ ଏହି ଦୁଇଟି ଜିନଷ ପାଇବାପାଇଁ ସେମାନେ ମଣିଷଙ୍କୁ କାମୁଡ଼, ତାଙ୍କ ଦେହରୁ ରକ୍ତ ଶୋଷିଥାନ୍ତି । ପରୀକ୍ଷା କରି ଦେଖାଯାଇଛି ଯେ, ଏହି ପଦାର୍ଥ ଦୁଇଟି ପାଚିଲା କଦଳୀରେ ପ୍ରଚୁର ପରିମାଣରେ ଥାଏ । ତେଣୁ ଯେଉଁମାନେ ଅଧିକ କଦଳୀ ଖାଇଥାନ୍ତି, ସେମାନଙ୍କୁ ବେଶୀ ମଶା କାମୁଡ଼ନ୍ତି ।

## ଶିକାରୀ ପକ୍ଷୀ—

ପୃଥିବୀରେ ଯେତେ ଜାତର ପକ୍ଷୀ ଅଛନ୍ତି; ସେମାନଙ୍କ ମଧ୍ୟରେ 'ଆସପ୍ରେ' ହେଉଛି ଧୁରନ୍ଧର । ୨ଫୁଟ ଦୈର୍ଘ୍ୟ ବିଶିଷ୍ଟ ଏହି ପକ୍ଷୀଟି ଦେଖିବାକୁ ଖୁବ୍ ସୁନ୍ଦର । ଏହାର ଦେହ ସମ୍ପୂର୍ଣ୍ଣ ଧଳା; କିନ୍ତୁ ଲାଞ୍ଜଟି ଗାଢ଼ କଳା ରଙ୍ଗର । ଏହାକୁ କେହି କେହି 'ଲଣ୍ଡା ଈଗଲ୍' ବୋଲି କହିଥାନ୍ତି ।

## ଉପକାରୀ ପକ୍ଷୀ—

ଶାଗୁଣାମାନଙ୍କୁ ସମସ୍ତେ ଘୃଣା କରିଥାନ୍ତି; କିନ୍ତୁ ସେମାନେ ମଣିଷ ସମାଜର ଯେଉଁ ଉପକାର କରୁଛନ୍ତି ସେକଥା ଭାବିଲେ ବିସ୍ମିତ ହେବାକୁ ପଡ଼େ । ଶାଗୁଣାର ଦୃଷ୍ଟିଶକ୍ତି ଅତି ତୀକ୍ଷ୍ଣ ହୋଇଥିବାରୁ ଯେ କୌଣସି ସ୍ଥାନରେ

ଶବଟିଏ ପଡ଼ିଲେ ଏମାନେ ଦଳ ଦଳ ହୋଇ ଆସି ପହଞ୍ଚିଯାନ୍ତି ଏବଂ ଅଳ୍ପ ସମୟ ମଧ୍ୟରେ ଶବ ଦେହରୁ ମାଂସ ଖାଇ ସଫା କରିଦିଅନ୍ତି । ଏମାନେ ଯଦି ମାଂସ ନ ଖାଆନ୍ତେ, ତେବେ ତାହା ପଚି ବାୟୁମଣ୍ଡଳ ବିଷାକ୍ତ ହୋଇ-ଯାନ୍ତା ଏବଂ ମଣିଷ ସମାଜ ନାନାପ୍ରକାର ରୋଗରେ ଆକ୍ରାନ୍ତ ହୋଇ ପଡ଼ନ୍ତେ ।

## ୧୦୦୦ ଜାତିର ବାଦୁଡ଼ି—

ପୃଥିବୀର ବିଭିନ୍ନ ଅଞ୍ଚଳରେ ପ୍ରାୟ ୧୦୦୦ ଜାତିର ବାଦୁଡ଼ି ବାସ କରନ୍ତି । କେବଳ କେତୋଟି ଦ୍ୱୀପପୁଞ୍ଜ ଏବଂ ଉତ୍ତର ଓ ଦକ୍ଷିଣ ମେରୁ ଅଞ୍ଚଳରେ ଏମାନେ ଦେଖାଯାନ୍ତି ନାହିଁ ।

## ମୁଷ୍ଟି ଯୋଦ୍ଧା କଙ୍କଡ଼ା—

ପ୍ରଶାନ୍ତ ମହାସାଗରର ହାୱାଇ ଦ୍ୱୀପରେ ଏକ ପ୍ରକାର କଙ୍କଡ଼ା ଦେଖାଯାନ୍ତି । ଏମାନଙ୍କୁ ମୁଷ୍ଟିଯୋଦ୍ଧା କଙ୍କଡ଼ା କୁହାଯାଏ । ଏହି କଙ୍କଡ଼ା ଯେତେବେଳେ ବୁଲି ବାହାରେ, ଦୁଇ ଗୋଡରେ ଦୁଇଟା ଏନମୋନ୍ ଗଛ ଧରିନିଏ, କୌଣସି ଶତ୍ରୁ ଆକ୍ରମଣ କଲେ ସେ ଏହି ଗଛ ସାହାଯ୍ୟରେ ସେ ଶତ୍ରୁକୁ ଆକ୍ରମଣ କରି ତାକୁ ମାରିପକାଏ । ତାପରେ ଶତ୍ରୁର ମାଂସ ଭକ୍ଷଣ କରେ ।

## ବଡ଼ବଡ଼ ଶାମୁକା—

ପୃଥିବୀରେ ପ୍ରାୟ ୮୦ ହଜାର ପ୍ରକାରର ଶାମୁକା ବାସ କରନ୍ତି । ଏମାନଙ୍କ ମଧ୍ୟରୁ କେହି ମାଟି ଉପରେ, କେହି ପାଣି ଭିତରେ, ଆଉ କେହି ବା ଗଛ ଉପରେ ବାସ କରନ୍ତି । ଅଷ୍ଟ୍ରେଲିଆଙ୍ଗ୍ରୁଟକ ଏହି ଶାମୁକା ଜାତିର ଏବଂ ପ୍ରାୟ ୨ ଫୁଟ ଲମ୍ବ ହୋଇଥାନ୍ତି । ଏହି ଶାମୁକାମାନଙ୍କ ଭିତରେ ଚିନି ଦାନା ପରି ଛୋଟ ଶାମୁକା ବି ଅଛନ୍ତି ।

## ସ୍ପଞ୍ଜ ଅମର—

ପୃଥିବୀରେ କେବଳ ସ୍ପଞ୍ଜ ହେଉଛି ଅମର । ଏହାକୁ ଯେତେ ଦଳି ଚକଟିଲେ ମଧ୍ୟ ଏହାର କିଛି କ୍ଷତ ହୁଏ ନାହିଁ । ବରଂ ଏହାକୁ ନେଇ ପାଣିରେ ପକାଇଲେ ଏହା ନିଜ ଆକୃତିର ଅନ୍ୟ ଏକ ସ୍ପଞ୍ଜ ସୃଷ୍ଟି କରିଥାଏ ।

## ଜୀବ ଜଗତର ବିଚିତ୍ରତା—

- ଶାର୍କ ମାଛକୁ ସମୁଦ୍ରର ବାଘ କୁହାଯାଏ ।
- ପୃଥିବୀର କ୍ଷୁଦ୍ରତମ ପକ୍ଷୀ ହେଉଛି ହ୍ୟାମିଙ୍ଗ୍ ।
- ଅଷ୍ଟ୍ରେଲିଆରେ ଗୁଣ୍ଡୁଚିମୂଷା ନାହାନ୍ତି ।
- ହାତୀ ପ୍ରତିଦିନ ୫ ଘଣ୍ଟାରୁ ଅଧିକ ଶୁଏ ନାହିଁ ।
- ଗୋଲ୍ଡ୍ ଫିସ୍ ନାମକ ମାଛ ଚୀନ ଦେଶରେ ବାସ କରେ ।
- ଘୋଡ଼ାର ୪୦ ଟି ଏବଂ ଘୋଡ଼ୀର ୩୬ ଟି ଦାନ୍ତ ଅଛି ।
- ଜନ୍ମ ସମୟରେ କଙ୍ଗାରୁ ଛୁଆ ମାତ୍ର ୧ ଇଞ୍ଚ ଲମ୍ବ ହୋଇଥାଏ ।
- ଗୋଟିଏ ସାମୁଦ୍ରିକ ମାଛର ନା 'ବମ୍ବେ ଡକ୍' ।
- ହାଙ୍ଗର ମାଛର ମୁଣ୍ଡ ହାତୁଡ଼ି ପରି ।

## ଫୁଲର ମୂଲ—

ଚଣ୍ଡୀଗଡ଼ଠାରେ ୨୨ ଏକର ପରିମିତ ଏକ ଜାଗାରେ ଗୋଟିଏ ଗୋଲାପ ବଗିଚା ରହିଛି । ଏହି ବଗିଚାଟିର ନାମ ଜାକିର୍ ହୁସେନ୍ ଗାର୍ଡ଼ନ । ଏଠାରେ ୮୦୦ ଭିନ୍ନ ଭିନ୍ନ ଜାତିର ଗୋଲାପ ଗଛ ଲଗାଯାଇଛି । ଏହି ବଗିଚାରୁ ଦେଶ ବିଦେଶକୁ ହଜାର ହଜାର ଟଙ୍କାର ଫୁଲ ବିକ୍ରି ପାଇଁ ପଠାଯାଇଥାଏ ।

## ମସଲା ଗଛ—

ତାମିଲନାଡୁ କୃଷି ବିଶେଷଜ୍ଞମାନେ ଗବେଷଣା କରି ଏକ ପ୍ରକାରର ଉଦ୍ଭିଦ ସୃଷ୍ଟି କରି ପାରିଛନ୍ତି । ଏହି ଗଛରୁ ୩ ପ୍ରକାରର ମସଲା ମିଳିପାରିବ, ଗଛର ପତ୍ର ହେବ ତେଜପତ୍ର, ଫଳ ହେବ ଅଳାଇଚ ଏବଂ ଛେଲି ହେବ ଡାଲିଚିନି ।

## ଶାଖାଥିବା ତାଳ ଗଛ—

ସ୍ପେନ ଦେଶର ବୁକୋଟଠାରେ ଏକ ପାଞ୍ଚଶାଖା ବିଶିଷ୍ଟ ତାଳଗଛ ଅଛି । ଏପରି ବିଚିତ୍ର ତାଳଗଛ ପୃଥିବୀର ଅନ୍ୟ କୌଣସି ସ୍ଥାନରେ ଦେଖାଯାଏ ନାହିଁ ।

## ଅଲିଭ୍ ଗଛ—

ଖ୍ରୀଷ୍ଟିଆନମାନଙ୍କ ଧର୍ମଗ୍ରନ୍ଥ ବାଇବେଲରେ ଯେଉଁ ଅଲିଭ୍ ଗଛ ସଂପର୍କରେ ଲେଖାହୋଇଛି ସେହି ଗଛକୁ ଭୂମଧ୍ୟସାଗର କ୍ରୀଟ ଦ୍ୱୀପର ଅଧିବାସୀମାନେ ପ୍ରାୟ ପାଞ୍ଚ ହଜାର ବର୍ଷ ତଳେ ଆବିଷ୍କାର କରିଥିଲେ । ପ୍ରାୟ ୩୦୦୦ ବର୍ଷ ତଳେ ଗ୍ରୀସ୍ ଦେଶର ଲୋକେ ଦେହକୁ ଚିକ୍କଣ ରଖିବାପାଇଁ ଅଲିଭ ଫଳର ତେଲ ବ୍ୟବହାର କରୁଥିଲେ । ୧୭୬୯ ମସିହାରେ ଏହି ଗଛ ମେକ୍ସିକୋରୁ ଆମେରିକାକୁ ଆସିଥିଲେ । ପ୍ରଧାନତଃ ତେଲ ପାଇଁ ଏହି ଗଛ ଚାଷ କରାଯାଇଥାଏ । ସ୍ପେନ ଦେଶରେ ବର୍ଷକୁ ପ୍ରାୟ ୧୮ ଲକ୍ଷ ଟନ୍ ଅଲିଭ୍ ଫଳ ତେଲପାଇଁ ଏବଂ ୬୦ ଲକ୍ଷ ଟନ ଫଳ ଖାଦ୍ୟ ରୂପେ ବ୍ୟବହୃତ ହୋଇ-ଥାଏ ।

## ଆମ୍ବର କେତେ ନାଁ—

ଆମ୍ବକୁ ବଙ୍ଗଳାରେ ଆମ୍ର, ହିନ୍ଦୀରେ ଆମ୍, ମରାଠୀରେ ଅମ୍ବ, କାନାଡ଼ରେ ମାଭୁ, ତେଲୁଗୁରେ-ମାମିଡ଼ି, ତାମିଲରେ-ମାଙ୍ଗ; ମାଲୟାଲମ୍‌ରେ-ମାଭୁ, ସାନ୍ତାଳୀରେ-ଉଲୁ, କର୍ଣ୍ଣାଟକରେ-ମାକିଣ, ଗୁଜୁରାଟୀରେ-ଆଁବୋ, ଆସାମୀରେ-ଆମ୍, ସିକିମ୍‌ରେ ଆମ୍,ଆରବୀରେ-ଅଧଜ,ନେପାଳୀରେ ଆଁପ, ଲାଟିନ୍‌ରେ ମାଙ୍ଗିଫେରା-ଇଣ୍ଡିକା ଏବଂ ଇଂରାଜୀରେ ମ୍ୟାଙ୍ଗୋ କୁହାଯାଏ ।

## ଅର୍ଜ୍ଜୁନ ଗଛ—

ବ୍ରହ୍ମଦେଶ ଓ ସିଂହଳ ଦ୍ୱୀପରେ ଅର୍ଜ୍ଜୁନ ଗଛ ବିଶେଷ ପରିମାଣରେ ଦେଖାଯାଏ । ଏହି ଗଛଗୁଡ଼ିକ ୬୦ ରୁ ୮୦ ଫୁଟ ଉଚ୍ଚ ହୁଅନ୍ତି । ବର୍ଷାଦିନେ ଏହି ଗଛରେ ଛୋଟ ଛୋଟ ଧଳା ରଙ୍ଗର ଫୁଲ ଫୁଟେ । ଗଛର ବିଭିନ୍ନ ଅଂଶ ଔଷଧ ରୂପେ ବ୍ୟବହୃତ ହୋଇଥାଏ ।

## ଔଷଧ ଉଦ୍ଭିଦ—

ଖ୍ରୀଷ୍ଟପୂର୍ବ ୧୫୦୦ ବର୍ଷ ତଳେ ଅର୍ଥାତ୍ ବୈଦିକ ଯୁଗରେ ଗଛ ଲତାମାନ ବିଭିନ୍ନ ଔଷଧ ରୂପେ ବ୍ୟବହୃତ ହେଉଥିଲା । ଉଦ୍ଭିଦଜଗତ ମଧ୍ୟରୁ ପ୍ରାୟ ୧୫୦୦ରୁ ୨୦୦୦ ଉଦ୍ଭିଦ ଔଷଧ ରୂପେ ଚିହ୍ନିତ ହୋଇଥିଲା ସତ, କିନ୍ତୁ ସେଥିରୁ ମାତ୍ର ୧୦୦ ପ୍ରକାରର ଗଛ ସାଧାରଣ ରୋଗମାନଙ୍କରେ ଔଷଧ ରୂପେ ବ୍ୟବହୃତ ହେଉଥିଲା ।

## ଉଦ୍ଭିଦ ଜଗତର ବିଚିତ୍ରତା—

- ପୃଥିବୀର ବୃହତ୍ତମ ଫୁଲ ହେଉଛି ରଫ୍ଲେସିଆ ।
- ବ୍ରହ୍ମଦେଶ ହେଉଛି ଲେମ୍ବୁର ଜନ୍ମ ସ୍ଥାନ ।
- ଓକ୍ ଗଛ ୮୦-୯୦ ବର୍ଷରେ ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୋଇଥାଏ । ଏହାପରେ ଯଦି ଓ ଗଛଟି ଆହୁରି ୧୫୦ ବର୍ଷ ବଞ୍ଚି ରହେ, ତେବେ ତାର ଉଚ୍ଚତା ଆଉ ପ୍ରାୟ ବଢ଼େ ନାହିଁ ।
- ମାଳୟ ଦ୍ୱୀପରେ ଥିବା ଏକପ୍ରକାର ଗଛର ପଠାରୁ ଗାଟାପାର୍ଚ୍ଚା ତିଆରି ହୁଏ ।

## ଆମର କଥା—

- ମଣିଷ ଦେହର ଚର୍ମ ଉପରେ ୧ ଲକ୍ଷ ଧୂସର ରଙ୍ଗର ଲୋମ, ୧ ଲକ୍ଷ ୨୫ ହଜାର କଳା ରଙ୍ଗର ଲୋମ ଏବଂ ମୁଣ୍ଡରେ ୮୦ ହଜାର ବାଳଥାଏ ।
- ଜଣେ ସ୍ୱାସ୍ଥ୍ୟବତୀ ମହିଳାଙ୍କ ମୁଣ୍ଡ ବାଳର ଲମ୍ବା ପ୍ରାୟ ୨୨ ଇଞ୍ଚ, କେତେକ କ୍ଷେତ୍ରରେ ଏହା ୪୮ ଇଞ୍ଚ ଲମ୍ବ ହୋଇଥାଏ ।
- ଶୀତଦିନ ଅପେକ୍ଷା ଖରାଦିନେ ମୁଣ୍ଡବାଳ ଅଧିକ ବଢ଼ିଥାଏ ।
- ମଣିଷ ଦେହରେ ୧୦ଲକ୍ଷ ଲୋମକୂପ ଅଛି । ଏହି ବାଟଦେଇ ଦେହରୁ ଝାଳ ବାହାରିଥାଏ ।
- ଜଣେ ପୂର୍ଣ୍ଣବୟସ୍କ ଲୋକ ଦେହରେ ୨୦୬ ଖଣ୍ଡ ହାଡ଼, ୧୨ ପାଉଣ୍ଡ ରକ୍ତ ଏବଂ ଯାହେ ୩। କିଲୋରୁ ୫ କଲୋ ପର୍ଯ୍ୟନ୍ତ ଚର୍ମ ରହିଥାଏ ।
- ମଣିଷ ଦେହରେ ଶତକଡ଼ା ୬୫ ଭାଗ ଅକ୍ସିଜେନ, ୧୮ ଭାଗ କାର୍ବନ, ୧୦ ଭାଗ ହାଇଡ୍ରୋଜେନ, ୩ ଭାଗ ନାଇଟ୍ରୋଜେନ୍, ୨ ଭାଗ କ୍ୟାଲସିୟମ୍, ୧ ଭାଗ ଫସଫରସ ଓ ୧ ଭାଗ କପର, ଜିଙ୍କ୍ ଆଦି ଥାଏ ।
- ପୁରୁଷମାନଙ୍କର ମସ୍ତିଷ୍କର ଓଜନ ପ୍ରାୟ ୫୦.୬୧ ଆଉନ୍ସ ଓ ସ୍ତ୍ରୀମାନଙ୍କ ମସ୍ତିଷ୍କର ଓଜନ ପ୍ରାୟ ୪୪.୫୨ ଆଉନ୍ସ ।
- ମନୁଷ୍ୟର ନଖ ବର୍ଷକେ ଅଢ଼େଇ ଇଞ୍ଚ ବଢ଼ିଥାଏ ।
- ମଣିଷର ଦାନ୍ତ, ସମାନ ବ୍ୟାସ ବିଶିଷ୍ଟ ତମ୍ବା ତାରଠାରୁ ବି ଟାଣ ।
- ପ୍ରତ୍ୟେକ ମଣିଷ ନିଜ ହାତରେ ସାଢ଼େ ୩ ହାତ ଉଚ୍ଚ ହୋଇଥାଏ ।
- ମଣିଷର ହୃତ୍‌ପିଣ୍ଡ ପ୍ରତି ମିନଟରେ ୭୨ ଥର ସ୍ପନ୍ଦନ ହୋଇଥାଏ ।

## ରୋଗ ପ୍ରତିରୋଧକ ଶକ୍ତି—

ପ୍ରାଗ୍‌ସ୍ଥିତ ସ୍ୱାସ୍ଥ୍ୟ ଗବେଷଣାଗାରର ଗବେଷକମାନେ ପରୀକ୍ଷା କରି ଜାଣିପାରିଛନ୍ତି ଯେ, ମନୁଷ୍ୟ ଦେହରେ ୧୦ ବର୍ଷରୁ ୧୨ ବର୍ଷ ବୟସ ମଧ୍ୟରେ ରୋଗ ପ୍ରତିରୋଧକ ଶକ୍ତି ଯେପରି ଥାଏ, ତାହା ଯଦି ସାରା ଜୀବନ ପାଇଁ ଅକ୍ଷୁର୍ଣ୍ଣ ରହିପାରନ୍ତା, ତେବେ ପୁରୁଷମାନେ ୧୫୦୦ ବର୍ଷ ଏବଂ ସ୍ତ୍ରୀମାନେ ୩୦୦୦ ବର୍ଷ ବଞ୍ଚି ପାରନ୍ତେ ।

## କୃତ୍ରିମ ରକ୍ତ—

ଜାପାନର ଟୋକିଓଠାରେ ଥିବା ଦୁଇଟି ଗବେଷଣା ପ୍ରତିଷ୍ଠାନ ଫୋରିନ୍ କମ୍ପାଉଣ୍ଡରୁ କୃତ୍ରିମରକ୍ତ ତିଆର କରିପାରିଛନ୍ତି । ସମଗ୍ର ପୃଥିବୀରେ ଏହାହିଁ ସର୍ବପ୍ରଥମ କୃତ୍ରିମ ରକ୍ତ । ଏହି କୃତ୍ରିମ ରକ୍ତର ମୁଖ୍ୟ ଉପାଦାନ ହେଲା ଫ୍ଲୁରୋ-କାର୍ବନ । ପଶୁମାନଙ୍କପାଇଁ ଏହି ରକ୍ତ ଖୁବ୍ ଦରକାରୀ । ବହୁ କୁକୁରଙ୍କ ଦେହରେ ଏହି ରକ୍ତ ପ୍ରୟୋଗ କରଯାଇ ଏହାର ଉପାଦେୟତା ପ୍ରମାଣିତ ହୋଇସାରିଛି ।

## ମନେ ପକାଇବା ଔଷଧ—

କାନାଡା ମସ୍ତିଷ୍କ ଗବେଷଣାଗାରର ମୁଖ୍ୟ ଡାକ୍ତର ଏକ ପ୍ରକାରର ଇଲେକ୍‌ଟ୍ରିକ୍ କରେଣ୍ଟ ଆବିଷ୍କାର କରିଛନ୍ତି । ଏହି କରେଣ୍ଟକୁ ଯଦି କୌଣସି ଲୋକର ମୁଣ୍ଡରେ ପୂରାଇ ଦିଆଯାଏ, ତେବେ ସେ ଲୋକ ତା ଜୀବନରେ ଘଟିଯାଇଥିବା କୋଡିଏ ବର୍ଷ ତଳର ଘଟଣା ସବୁ ମନେପକାଇ ପାରିବ ।

## ଭୁଲିଯିବା ଔଷଧ—

ଲେନିନ୍‌ଗ୍ରାଡ ରିସର୍ଚ୍ଚ ଇନଷ୍ଟିଚ୍ୟୁଟର ଡାଇରେକ୍ଟର ମାଡାମ୍ ନାଟାଲ୍ୟା ବେଶ୍ ତେରେତ ଏପରି ଏକ ନୂତନ ପଦ୍ଧତ ବାହାର କରିଛନ୍ତି, ଯାହାଦ୍ୱାରା ମନୁଷ୍ୟର ସ୍ମୃତିକୋଷରୁ ଯେ କୌଣସି ନିର୍ଦ୍ଦିଷ୍ଟ ଘଟଣ କୁ ପୋଛି ଦେଇହେବ । ମନୁଷ୍ୟ ବେଳେବେଳେ କୌଣସି ଦୁଃଖଦାୟକ ଘଟଣାର ସ୍ମୃତିକୁ ଅନେକ ଦିନଯାଏଁ ଭୁଲି ନପାରି ଦୁଃଖ ପାଇଥାଏ, କିନ୍ତୁ ଏହି ପଦ୍ଧତି ଅନୁସାରେ ସେ ସେହି ଦୁଃଖଦାୟକ ଘଟଣାକୁ ସହଜରେ ଭୁଲିଯାଇ ପାରିବ, କିନ୍ତୁ ତାର ଶରୀର ବା ମନର କୌଣସି କ୍ଷତି ହେବନାହିଁ ।

## ଜଣକର ଖାଦ୍ୟ ଅନ୍ୟର ଅଖାଦ୍ୟ—

ହିନ୍ଦୁମାନେ ଗୋଜାତିକୁ ପବିତ୍ର ମନେକରି ସେମାନଙ୍କର ପୂଜା ଅର୍ଚ୍ଚନା କରିଥାନ୍ତି । ତେଣୁ ସେମାନେ ଗୋମାଂସ ଭକ୍ଷଣ କରନ୍ତି ନାହିଁ, କିନ୍ତୁ ମୁସଲମାନ ଏବଂ ଖ୍ରିଷ୍ଟମାନଙ୍କର ଗୋମାଂସ ଅତି ପ୍ରିୟ ଖାଦ୍ୟ; କିନ୍ତୁ ଘୁଷୁରି ମାଂସକୁ ସେମାନେ ଅଖାଦ୍ୟ ମନେ କରିଥାନ୍ତି । ଅଥଚ ଚୀନ୍‌ଦେଶ ଲୋକଙ୍କର ଘୁଷୁରୀ ମାଂସ ଅତିପ୍ରିୟ ।

## ଉପଗ୍ରହ ପ୍ରେରିତ ଚିଠି—

୧୯୮୦ ମସିହା ଜୁନ ୧୭ ତାରିଖ ଦିନ ଉପଗ୍ରହ ମାଧ୍ୟମରେ ପୃଥିବୀର ପ୍ରଥମ ଚିଠି ଆଟଲାଣ୍ଟିକ ମହାସାଗର ଅତିକ୍ରମ କରି ଲଣ୍ଡନଠାରୁ କାନଡାର ଟରେଣ୍ଟୋଠାରେ ପହଞ୍ଚିଥିଲା । ଏଥିପାଇଁ ମାତ୍ର ଦେଢ଼ିଏ ମିନଟ ସମୟ ଲାଗିଥିଲା ।

ଏହି ମହାକାଶ ଚିଠିର ପ୍ରଥମ ପୃଷ୍ଠାଟି ଲାଗି ୪ପାଉଣ୍ଡ ଅର୍ଥାତ ଟ ୯.୨୦ ପଇସା ଏବଂ ତାର ପରବର୍ତ୍ତୀ ପୃଷ୍ଠାପାଇଁ ୨ ପାଉଣ୍ଡ ଖର୍ଚ୍ଚ ଲାଗିଥିଲା ।

## ସ୍ୱପ୍ନ ରେକର୍ଡ ହୋଇଯିବ—

ଆମେରିକାର ବୈଜ୍ଞାନିକମାନେ "ସ୍ଲିପ ଡ୍ରିମ ମନିଟର" ନାମରେ ଏକ ନୂଆ ଯନ୍ତ୍ର ବାହାର କରିଛନ୍ତି । ମଣିଷ ଶୋଇଲା ପରେ ଏହି ଯନ୍ତ୍ରଟି ତା ଦେହରେ ଲଗାଇଦେଲେ, ଶୋଇବା ଅବସ୍ଥାରେ ସେ କ'ଣ ଭାବୁଛି ବା ସ୍ୱପ୍ନ ଦେଖୁଛି, ସେ ସବୁକଥା ଏହି ଯନ୍ତ୍ରରେ ରେକର୍ଡ ହୋଇଯିବ ।

## ମିଛୁଆ ଧରା ଯନ୍ତ୍ର—

ମିଛ କହୁଥିବା ଲୋକକୁ ଧରିବାପାଇଁ ବୈଜ୍ଞାନିକମାନେ ଗୋଟିଏ ନୂତନ ଧରଣର ଯନ୍ତ୍ର ବାହାର କରିଛନ୍ତି । ଯେଉଁଲୋକଟି ମିଛ କହୁଛି ବୋଲି ସନ୍ଦେହ କରାଯାଏ, ତାକୁ ଗୋଟିଏ ଝାଡ଼ସଜ୍ଜା ରହିନ ଘର ଭିତରକୁ ନେଇ ଏକ ସ୍ୱତନ୍ତ୍ର ଚଉକିରେ ବସାଇ ଦିଆଯାଏ । ତାପରେ ଲୋକଟିର ହାତ ଓ ଗୋଡରେ ଦୁଇଟି ଯନ୍ତ୍ର ଲଗାଇ ଦିଆଯିବା ସଙ୍ଗେ ସଙ୍ଗେ ୧୦ ଇଞ୍ଚ ଲମ୍ବର ଗୋଟିଏ ରବର ନଳୀ ତାର ହାତ ଓ ପେଟରେ ଗୁଡାଇ ଦିଆଯିବା ସଙ୍ଗେ ସଙ୍ଗେ ନଳୀର ଗୋଟିଏ ମୁଣ୍ଡ ପାଲିଗ୍ରାଫ ନାମକ ଯନ୍ତ୍ର ସହିତ ଯୋଡ଼ ଦିଆଯାଏ । ତାପରେ ଲୋକଟିର ଡାହାଣ ହାତର କିଣି ଆଙ୍ଗଠି ଓ ଅନାମିକା ଅଙ୍ଗୁଠିରେ

ଦୁଇଟି ଚମ୍ବାଖୋଳ ପିନ୍ଧାଇଦେଇ ତାରି ସାହାଯ୍ୟରେ ଲୋକଟିର ଦେହ ଭିତରକୁ ସାମାନ୍ୟ ବିଦ୍ୟୁତ୍‌ଶକ୍ତି ପ୍ରବେଶ କରାଇ ଦିଆଯାଏ । ଏହାପରେ ଲୋକଟିର ବାଁ ହାତରେ ଆଉ ଗୋଟିଏ ରବରନଳୀ ଗୁଡାଇ ଦେଇ ସ୍ଫିଗ୍‌ମୋ-ଗ୍ରାଫ ଓ ସ୍ଫିଗ୍‌ମୋ ମିଟର ନାମକ ଯନ୍ତ୍ର ସାଙ୍ଗରେ ଯୋଡ଼ ଦିଆଯାଏ । ଏ ସମସ୍ତ ବ୍ୟବସ୍ଥା ସରିଲା ପରେ ଘର ଭିତରେ ବସିଥିବା ଜଣେ ମାତ୍ର ପରୀକ୍ଷକ ଲୋକଟିକୁ ୧୧ଟି ସରଳ ପ୍ରଶ୍ନ ପଚାରନ୍ତି । ସେଇ ପ୍ରଶ୍ନଗୁଡ଼ିକର ଉତ୍ତର ଦେଲା-ବେଳେ, ଲୋକଟି ଯଦି ମିଛକହେ, ତେବେ ତା ଦେହରେ ଲାଗିଥିବା ଯନ୍ତ୍ର ଗୁଡ଼ିକରେ ରକ୍ତଚାପ ଓ ନାଡ଼ିର ଗତି ଆଦି ରେକର୍ଡ ହୋଇଯାଏ । ସେହି ବିବରଣୀଗୁଡ଼ିକ ପରୀକ୍ଷା କଲାପରେ ଲୋକଟି ସତ କହୁଛି କି ମିଛ କହୁଛି ତାହା ଜଣାପଡ଼ିଯାଏ ।

## ବିନା କାଳିରେ ଲେଖା—

ଆମେରିକାର ମିନେସୋଟା ମାଇନିଂ ଆଣ୍ଡ ମାନୁଫାକ୍‌ଚରିଙ୍ଗ କମ୍ପାନୀ 'ଏକସନ' ନାମରେ ଏକ ନୂଆ ଧରଣର ଲେଖା କାଗଜ ତାହାର କରିଛନ୍ତି । ଏହି କାଗଜରେ ବିନା କାଳିରେ ଲେଖିହେବ କାରଣ ଏ କାଗଜ ତିଆରି ବେଳେ ତା ଭିତରେ ଛୋଟ ଛୋଟ ରଙ୍ଗର ଥଳି ( Capswele କୋଟି କୋଟି ସଂଖ୍ୟାରେ ବୁଣି ଦିଆଯାଇ ଥାଏ । ଏଥିରୁ ୨ ଖଣ୍ଡକାଗଜ ଗୋଟିଏ ଥାକକରି କାର୍ବନ ନ ପକାଇ ଟାଇପ କଲେ କିମ୍ବା ଷ୍ଟାଇଲସ କଲମରେ ଲେଖିଲେ, ଲେଖାତକ ସବୁକାଗଜରେ ଏକାଥରକେ ଉଠିଯାଏ । ଏପରି ହେବାର କାରଣ ହେଉଛି, ଟାଇପ୍ ମେସିନ କିମ୍ବା ଷ୍ଟାଇଲସ୍ କଲମ ଚାଲିଲାବେଳେ କାଗଜ ଭିତରେ ଥିବା ରଙ୍ଗର ମୁଣିଗୁଡ଼ିକ ଫାଟିଯାଇ ଠିକ୍ ଅକ୍ଷର ଆକୃତିରେ କାଳି ମଡେଇ ହୋଇଯାଏ । ଏହାର ଦୁଇ ପାଖରେ ମଧ୍ୟ ଲେଖାଯାଇପାରେ ।

## ଟେପ୍‌ରେକର୍ଡରେ ତାସ ଖେଳ—

ନ୍ୟୁୟର୍କର ଏକ ଶିକ୍ଷାନୁଷ୍ଠାନ ଏପରି ଏକ ଟେପରେକର୍ଡ ପ୍ରସ୍ତୁତ କରିଛନ୍ତି, ଯେଉଁଥିରେ ବିନା ବୁଦ୍ଧିଖର୍ଚ୍ଚରେ ଖୁବ ସୁନ୍ଦର ଭାବେ ତାସ ଖେଳିହେବ । ଗୋଟିଏ ତାସ ପଟ ଉପରେ ୧୨୦ ପର୍ଯ୍ୟନ୍ତ ତଥ୍ୟ ରଖି, ଖେଳାଳିକୁ ଠିକ୍ ତାସ ପକାଇବାକୁ ଟେପରେକର୍ଡ ସଙ୍କେତ ଦେବ । ଏଇଟିକୁ ବ୍ୟବହାର କରିବା ଖୁବ୍ ସହଜ । ଏପରକି ପିଲାମାନେ ମଧ୍ୟ ଏହା ବ୍ୟବହାର କରିପାରିବେ ।

## ଶୀତତାପ ନିୟନ୍ତ୍ରିତ ଛତା—

ମାଡ୍ରାଜସ୍ଥିତ ଗୋଟିଏ ଖେଳନା ପ୍ରସ୍ତୁତକାରୀ କମ୍ପାନୀ ଏକ 'ଶୀତତାପ

ନିୟନ୍ତ୍ରିତ ଛତା' ବାହାର କରିଛନ୍ତି । ଏଥିରେ ବ୍ୟାଟେରୀ ଚାଳିତ ଏକ ପଙ୍ଖା ଲାଗିଛି । ଛତାଟି ଖୋଲିବାମାତ୍ରେ ପଙ୍ଖାଟି ଚାଲିବାକୁ ଆରମ୍ଭ କରେ । ତେଣୁ ମରୁଭୂମିର ପଥିକମାନେ ଏହି ଛତା ବ୍ୟବହାର କଲେ ପ୍ରଚଣ୍ଡ ସୂର୍ଯ୍ୟତାପରୁ ରକ୍ଷା ପାଇପାରିବେ । ଏହି ଛତାକୁ ଦେହରେ ଘୋଡ଼ାହୋଇ ପଡ଼ିଲେ ବେଶ ଥଣ୍ଡା ଲାଗିବ ।

## ତଷୁ ବ ମୂଲ୍ୟବାନ—

ଧାନକଳମାନଙ୍କରେ ତଷୁକୁ ସାଧାରଣତଃ ଜାଳେଣୀ ରୂପେ ବ୍ୟବହାର କରାଯାଇଥାଏ । ହିସାବ କରି ଦେଖାଯାଇଛି ଯେ, ଦେଶରେ ପ୍ରାୟ ୮କୋଟି ଟନ୍ ଓଜନର ତଷୁ ପ୍ରତିବର୍ଷ ଜାଳେଣୀରୂପେ ବ୍ୟବହୃତ ହେଉଛି । ଏହି ପରିମାଣ ତଷୁ କ୍ଷାରରୁ ଅତିକମ୍‌ରେ ୧୬ଲକ୍ଷ ଟନ ସୋଡ଼ିୟମ୍ ସିଲିକେଟ ଓ ୫ ଲକ୍ଷ ଟନ ପଟାସ ମିଳିପାରିବ । ସୋଡ଼ିୟମ ସିଲିକେଟର ଦାମ ଟନ ପ୍ରତି ୨୦୦୦ଟଙ୍କା ଏବଂ ପଟାସ୍ ଟନ ପ୍ରତି ୯୦୦ ଟଙ୍କା । ଏହି ସମସ୍ତ ତଷୁ କ୍ଷାରକୁ ଉପଯୋଗ କରିପାରିଲେ ବର୍ଷକୁ ପ୍ରାୟ ୩୬୫ କୋଟି ଟଙ୍କା ମିଳିପାରିବ ।

## ପାଉଁଶରୁ ଇଟା ତିଆରି—

ତାପଜ ବିଦ୍ୟୁତ କେନ୍ଦ୍ରଗୁଡ଼ିକରେ ବ୍ୟବହୃତ ହେଉଥିବା କୋଇଲାଗୁଣ୍ଡର ପାଉଁଶରୁ ଶସ୍ତାରେ ଇଟା ତିଆରି କରାଯାଇପାରିବ ବୋଲି ରୁର୍କିସ୍ଥିତ କେନ୍ଦ୍ର ନର୍ମାଣ ଗବେଷଣା ପ୍ରତିଷ୍ଠାନ ଏକ ନୂଆ ଉପାୟ ବାହାର କରିଛନ୍ତି । ଦେଶରେ ଥିବା ତାପଜ ବିଦ୍ୟୁତ୍ କେନ୍ଦ୍ରଗୁଡ଼ିକରୁ ବର୍ଷକୁ ପ୍ରାୟ ପାଞ୍ଚ ନିୟୁତ ଟନ୍ ପାଉଁଶ ବାହାରିଥାଏ । ୧୯୮୦ ମସିହା ବେଳକୁ ଏହି ପରିମାଣ ୮ ନିୟୁତ ଟନ୍‌କୁ ବୃଦ୍ଧି ପାଇଥିବ । ଏହି ପାଉଁଶ ତିଆରି ଇଟାଗୁଡ଼ିକ ସାଧାରଣ ଇଟାଠାରୁ କୌଣସି ଗୁଣରେ ଉଣା ହେବନାହିଁ ।

## ୟ୍ୟାଟେରୋମିଟର—

ୟୁରେନିୟମ୍ ଏକ ଶକ୍ତ ଧାତୁ ଏବଂ ଦେଖିବାକୁ ଧଳା ନିକେଲ ପରି । ଏହି ଧାତୁଟି ୧୭୮୯ ମସିହାରେ ମାର୍ଟିନ ହେନରିଚ୍ କ୍ଲାପ୍ରୋଥ୍ ନାମରେ ଜଣେ ବୈଜ୍ଞାନିକ ଆବିଷ୍କାର କରିଥିଲେ । ୧୭୮୧ରେ ଆବିଷ୍କୃତ ୟୁରେନସ୍ ଗ୍ରହର ନାମାନୁସାରେ ଏହି ଧାତୁଟିକୁ ୟୁରେନିୟମ୍ ନାମରେ ନାମିତ କରାଯାଇଥିଲା । ପିଚ୍‌ବ୍ଲେଣ୍ଡରୁ ଏହି ଧାତୁଟି ମିଳିଥାଏ । ଏହା ସାଧାରଣତଃ ପରମାଣୁ ଶକ୍ତି

ଉତ୍ପାଦନ କେନ୍ଦ୍ରରେ ବ୍ୟବହୃତ ହୋଇଥାଏ । ଏକ ପାଉଣ୍ଡ ୟୁରାନିୟମ୍‌ରୁ ଯେଉଁ ଶକ୍ତି ମିଳେ ; ସେତିକି ଶକ୍ତି ପାଇଁ ୧୦ ଟନ କୋଇଲା ଆବଶ୍ୟକ ।

## କ୍ଷୁଦ୍ରତମବସ୍ତୁ ଆଟମ୍—

ଯେତେ ଛୋଟିଆ ବସ୍ତୁଟିଏ କଳ୍ପନା କଲେ ମଧ୍ୟ ଆଟମ୍ (ପରମାଣୁ) ତାଠାରୁ ବହୁ ଗୁଣରେ ଛୋଟ । ଖ୍ରୀଷ୍ଟଜ ୦ ଠାରୁ ଆଜି ପର୍ଯ୍ୟନ୍ତ ୧, ୨; ୩, ୪ କ୍ରମରେ ଅଙ୍କଗୁଡ଼ିକୁ ଏକତ୍ର ମିଶାଇଲେ, ଯେଉଁ ସଂଖ୍ୟାଟି ହେବ ; ସେତିକି ଆଟମ୍ ଏକତ୍ର କଲେ ଗୋଟିଏ ଆଲପିନ୍ ମୁନ ମଧ୍ୟ ଘୋଡ଼ ହୋଇ ପାରିବ ନାହିଁ ।

## ବୃହତ୍ତମ ହୀରା—

ପୃଥିବୀର ବୃହତ୍ ହୀରଖଣ୍ଡଗୁଡ଼ିକ ମଧ୍ୟରେ କୁଲିନାନ ଅନ୍ୟତମ । ଏହା ଦେଖିବାକୁ ଏକ ଦ୍ରାକ୍ଷା ଫଳପରି ଏବଂ ଓଜନମାତ୍ର ୧ ପାଉଣ୍ଡ୍ ୯ ଆଉନ୍ସ । ଦକ୍ଷିଣ ଆଫ୍ରିକାର ଜର୍ଜ ଟାଉନ୍ ଠାରୁ ୩୬୦ କି: ମି: ଦୂରସ୍ଥ ବୁର୍ପଙ୍ଗ ଅଞ୍ଚଳରେ ଥିବା ପ୍ରିମିୟର ହୀର ଖଣିରୁ ଜଣେ ଶ୍ରମିକ ଏଇଟିକୁ ଆବିଷ୍କାର କରିଥିଲେ ।

୧୯୦୫ ମସିହା ଜାନୁଆରୀ ୨୬ ତାରିଖ ଦିନ କ୍ୟାପ୍‌ଟେନ୍ ଏମ୍. ଏଫ୍. ଓୟେଲମ୍ ଏହି ଖଣିରୁ ୧ ୧/୪ ପାଉଣ୍ଡ ଓଜନର ଅନ୍ୟ ଏକ ହୀର-ଖଣ୍ଡ ମଧ୍ୟ ଆବିଷ୍କାର କରିଥିଲେ ।

## ଆଇ ଅଫ୍ ଦ ଆଇଡ଼ଲ୍—

ଆଇ ଅଫ ଦି ଆଇଡଲ ନାମକ ହୀରଖଣ୍ଡ ୧୭ ଶ ଶତାବ୍ଦୀରେ ଦକ୍ଷିଣ ଭାରତରେ ଗୋଲକୁଣ୍ଡା ହୀର ଖଣିରୁ ଆବିଷ୍କୃତ ହୋଇଥିଲା । ଏହାର ଓଜନ ୨୦ କ୍ୟାରେଟ୍ ଓ ଆକାରରେ ମନୁଷ୍ୟର ହୃତ୍‌ପିଣ୍ଡ ପରି । ଏହାର ରଙ୍ଗ ନୀଳ ଶ୍ୱେତବର୍ଣ୍ଣ । ବଗଦାଦର ସୁଲତାନ ଏହାର ଅଧିକାରୀ ଥିଲେ , କିନ୍ତୁ ଏହି ହୀରାଟି ଯୋଗୁଁ ତାଙ୍କୁ ବହୁ ଦୁଃଖର ସମ୍ମୁଖୀନ ହେବାକୁ ପଡ଼ିବାରୁ ବାଧ୍ୟ ହୋଇ ସେ ଏହାକୁ ହସ୍ତାନ୍ତର କରିଦେଲେ । ତାପରେ ଏହା ଅନେକ ହାତ ହୋଇ ତୁର୍କି ଅଟୋମାନ ସମ୍ରାଜ୍ୟର ସୁଲତାନ ଅବଦୁଲ୍ ହମିନଙ୍କ ଅଧିକାର ଭୁକ୍ତ ହେଲା । ହମିନ ଏହି ହୀରାଟିକୁ ଗୋଟିଏ ମୂର୍ତ୍ତିର ଚକ୍ଷୁରେ ଖଞ୍ଜି ଦେଇଥିଲେ । ସେହିଦିନ ଠାରୁ ଏହାର ନାମ ହେଲା ଆଇ ଅଫ ଦି ଆଇଡଲ

ତା ମୂର୍ତ୍ତିର ଚକ୍ଷୁ କନ୍ତୁ ଏହି ହୀରାର ମାଲିକ ହେବା ପରେ ତାଙ୍କୁ ବହୁ ଆକ୍ରମଣର ସମ୍ମୁଖୀନ ହେବାକୁ ପଡ଼ିଥିଲା । ତେଣୁ ସେ ମଧ୍ୟ ହୀରାଟିକୁ ହସ୍ତାନ୍ତର କରିଦେଲେ । ଏହା ପରେ ହୀରାଟି ଅନେକଙ୍କ ହାତକୁ ଯାଇଛି । କିନ୍ତୁ କାହାରି ପାଖରେ ସ୍ଥାୟୀ ହୋଇ ରହିପାରି ନାହିଁ । ୧୯୮୦ ମସିହା ଅଗଷ୍ଟ ମାସରେ ଫ୍ରାନ୍ସର ନାଇସ ଠାରେ ଅନୁଷ୍ଠିତ ହୀରକ ପ୍ରଦର୍ଶନୀରେ ଏହା ପ୍ରଦର୍ଶିତ ହୋଇଥିଲା ।

## ଷ୍ଟେନ୍‌ଲେସ୍ ଷ୍ଟିଲ୍ ବିପଦପୂର୍ଣ୍ଣ—

ଆମେରିକାର ଫିଲାଡେଲଫିଆ ମେଡିକାଲ୍ କଲେଜର ଡକ୍ଟର ୱିଲିୟମ ଏଫ. ସୁନ୍ଦରମ୍ୟାନଙ୍କ ମତରେ ଆମେରିକାର ୫ ସେଣ୍ଟ ମୁଦ୍ରା ମନୁଷ୍ୟପକ୍ଷେ କ୍ଷତିକାରକ । କାରଣ ଏହି ମୁଦ୍ରାରେ ୧ : ୭ ଅନୁପାତରେ ନିକେଲ ଓ ତମ୍ବା ରହିଛି । ଭାରତରେ ପ୍ରଚଳିତ ୨୫ ପଇସା ଓ ୫୦ ପଇସା ମୁଦ୍ରାରେ ମଧ୍ୟ ଏହି ଦୁଇଟି ଧାତୁ ରହିଛି । ଏଥିରେ ନିକେଲ ପରିମାଣ ଶତକଡ଼ା ୨୫ ଭାଗ । ଏହି ନିକେଲ ଏକ ବିଷାକ୍ତ ଧାତୁ ହାତରେ ଲାଗିଥିବା ଝାଳଦ୍ୱାରା ଏହି ନିକେଲ ପଇସାରୁ ଛାଡ଼ି ପେଟ ଭିତରକୁ ଯାଏ ଏବଂ ଦେହରେ ନାନା ରୋଗ ଜନ୍ମାଏ । ଷ୍ଟେନଲେସ୍ ଷ୍ଟିଲ ବାସନରେ ଶତକଡ଼ା ୮ ଭାଗ ନିକେଲ ରହିଛି । ତେଣୁ ଏହି ବାସନରେ ଖିଆପିଆ କଲେ ଶରୀରରେ ନାନା ରୋଗ ସୃଷ୍ଟି ହୋଇଥାଏ ।

## ବିନ୍ଦୁର ଓଜନ—

ଆମେରିକାର କିଉବ୍ରୁନ୍ ସଓଇକ ପରମାଣୁ ଶକ୍ତି କେନ୍ଦ୍ରର ବୈଜ୍ଞାନିକମାନେ ପରୀକ୍ଷା କରି ଜାଣିପାରିଛନ୍ତି ଯେ, ଇଂରାଜୀ ବାକ୍ୟ ଶେଷରେ ଯେଉଁ ଫୁଲଷ୍ଟପ ବା ବିନ୍ଦୁ ଦିଆଯାଏ , ତାର ଓଜନ ହେଉଛି .୦୦୦୯୯୫୨୨୩୨୫ ମିଲିଗ୍ରାମ ।

## ମଣିଷ ଚହ୍ନିଲା ଲକେଟ୍—

ରେଲ, ମଟର, ଉଡ଼ାଜାହାଜ ଆଦି ଦୁର୍ଘଟଣାରେ ଯେଉଁମାନେ ମୃତ୍ୟୁବରଣ କରନ୍ତି , ସେମାନଙ୍କୁ ଚିହ୍ନଟ କରିବା ଅନେକ ସମୟରେ ଅସମ୍ଭବ ହୋଇପଡ଼େ । ସେଇଥିପାଇଁ ଅଉଣ୍ଡା ଇସ୍ପାତରେ ଏକ ପ୍ରକାର ଲକେଟ ବାହାରିଛି । ଏହି ଲକେଟର ବ୍ୟାସ ପ୍ରାୟ ୨ ସେଣ୍ଟିମିଟର । ଏହା ମଧ୍ୟରେ ଏକ ପ୍ରକାର ୱାଟରପ୍ରୁଫ ପ୍ଲାଷ୍ଟିକ ଖୋଳ ଅଛି ଏବଂ ସେଥିରେ

୬ଟି ଖଷାରେ ବ୍ୟକ୍ତିର ନାମ, ଠିକଣା, ବ୍ଲଡଗ୍ରୁପ ଆଦିର ବିବରଣୀ ଲିପିବଦ୍ଧ ହୋଇଥାଏ । ଏହାକୁ ହାତ, ଘଣ୍ଟାଫିତା, ବେଲଟ ଆଦିରେ ଲଗାଇ ପିନ୍ଧା ଯାଇପାରିବ ।

## କଉଡ଼ିର ବ୍ୟବହାର—

କଉଡ ହେଉଛି ଏକ ସାମୁଦ୍ରିକ ଜୀବର ଅସ୍ଥି । ସଂସ୍କୃତରେ ଏହାକୁ କପର୍ଦ୍ଦକ କୁହାଯାଏ । ଅତି ପ୍ରାଚୀନ କାଳରେ କଉଡ ଭାରତରେ ମୁଦ୍ରାରୂପେ ବ୍ୟବହୃତ ହେଉଥିଲା । କେଶରୀ ବଂଶ ରାଜାମାନଙ୍କ ରାଜତ୍ୱ ସମୟରେ ଏହା ଉତ୍କଳରେ ମୁଦ୍ରାରୂପେ ପ୍ରଚଳିତ ହେଉଥିଲା; କିନ୍ତୁ ବ୍ରିଟିଶ୍ ରାଜତ୍ୱ ସମୟରେ ଏହାର ପ୍ରାଧାନ୍ୟ କମିଗଲା ।

କଉଡ ବିଭିନ୍ନ ପ୍ରକାର ଅଛି, ଯଥା—ଗଣ୍ଡି କଉଡ, ସାଧା କଉଡ, ବେଙ୍ଗୀ କଉଡ ଓ ଚିତ୍ର କଉଡ । ଚିତ୍ରକଉଡ ଦେଖିବାକୁ ଅତିସୁନ୍ଦର ଓ ମୂଲ୍ୟବାନ ।

କଉଡକୁ ଭସ୍ମକରି ଚିକିତ୍ସକମାନେ ଔଷଧ ରୂପେ ବ୍ୟବହାର କରିଥାନ୍ତି । ବେଙ୍ଗୀ କଉଡକୁ ସୂତାରେ ଗୁନ୍ଥି ପିଲାଙ୍କ ବେକରେ ପିନ୍ଧାଇ ଦେଲେ ସେମାନଙ୍କ ଦେହର ବେଙ୍ଗୀବଥ ଭଲ ହୋଇଯାଏ ବୋଲି ଲୋକଙ୍କର ବିଶ୍ୱାସ ।

## ସାଧାରଣ ବସ୍ତୁର ଅସାଧାରଣ ଗୁଣ—

ପୃଥିବୀରେ ଯେତେଗୁଡ଼ଏ ସାଧାରଣ ଖଣିଜ ଦ୍ରବ୍ୟ ରହିଛି, ଲବଣ ସେଗୁଡ଼କ ମଧ୍ୟରେ ଅଧିକ ସାଧାରଣ ହେଲେହେଁ; ଯୁଗଯୁଗଧରି ଏହାର ଚାହିଦା ସବୁଠୁଁ ବେଶୀ । ହ୍ରଦ ଓ ସମୁଦ୍ରମାନଙ୍କରେ ଯେତେ ଲବଣ ଅଛି, ସେସବୁକୁ ଏକତ୍ର କରି ପୃଥିବୀ ଉପରେ ବିଛେଇ ଦେଲେ; ତାହା ୨୦୦ ଫୁଟ ଉଚ୍ଚ ହୋଇ ଯିବ । ଲବଣପାଇଁ ଦେଶ ଦେଶ ମଧ୍ୟରେ ଯୁଦ୍ଧ ହୋଇଛି । ତାକୁ ଖୋଜିବା ପାଇଁ ନୂତନ ପଥ ମଧ୍ୟ ଆବିଷ୍କୃତ ହୋଇଛି । ବସ୍ତୁଟି ସାଧାରଣ ହେଲେହେଁ ଗୁଣ ତାର ଅସାଧାରଣ ।

## ସୁନା ଓ ଲୁଣ ସମାନ—

ଯୁକ୍ତରାଷ୍ଟ୍ର ଆମେରିକାର ଓରେଗନ୍‌ଠାରେ ୧୮୪୨ ମସିହାରେ ସୁନା ଓ ଲୁଣର ମୂଲ୍ୟ ସମାନ ଥିଲା ।

## ଭାରତରେ ପ୍ରଥମ ମୁଦ୍ରା ପ୍ରଚଳନ—

ଭାରତରେ ସର୍ବପ୍ରଥମେ ଶେରସାହଙ୍କ ରାଜତ୍ୱ ସମୟରେ ୧୫୪୨

ମସିହାରେ ରୌପ୍ୟ ମୁଦ୍ରା ପ୍ରଚଳନ ଆରମ୍ଭ ହୋଇଥିଲା । ଖାଣ୍ଟି ରୂପାରେ ନିର୍ମିତ ପ୍ରତ୍ୟେକଟି ମୁଦ୍ରାର ଓଜନ ଥିଲା ୧୭୯ ଗ୍ରାମ୍ ।

## ମନି ଶବ୍ଦ କିପରି ସୃଷ୍ଟି ହେଲା—

ରୋମାନ ଦେବୀ ଜୁନୋମୋନେଟାଙ୍କ ନାମରୁ 'ମନି' ଶବ୍ଦର ଉଦ୍ଭବ ହୋଇଛି । ପ୍ରାଚୀନ ରୋମରେ ଶିଶୁଟିଏ ଜନ୍ମଲାଭ କଲାପରେ, ତାର ପିତାମାତା ନିର୍ଦ୍ଦିଷ୍ଟ ଆକାରର ଗୋଟିଏ ମୂଲ୍ୟବାନ ଧାତୁ ଦେବୀଙ୍କୁ ଅର୍ପଣ କରୁଥିଲେ । ସେହି ଧାତୁ ଖଣ୍ଡଗୁଡ଼ିକ ଦେବୀଙ୍କ ମନ୍ଦିରରେ ଦୀର୍ଘକାଳ ଗଚ୍ଛିତ ରହିବାପରେ ଏକ ଯୁଦ୍ଧକାଳୀନ ପରିସ୍ଥିତିରେ ପ୍ରଥମେ ମୁଦ୍ରା ରୂପେ ବ୍ୟବହାର କରାଯାଇଥିଲା । ସେହି ସମୟରୁ ମୁଦ୍ରା ଗୁଡ଼ିକ (ମନି) ନାମରେ କଥିତ ହେଲା ।

## ପ୍ରଥମ ବୈଦ୍ୟୁତିକ ରେଲ—

୧୯୨୫ ମସିହା ଫେବୃଆରୀ ମାସ ୫ ତାରିଖ ଦିନ ଭାରତରେ ସର୍ବ ପ୍ରଥମେ ବମ୍ବେର ଭିକ୍ଟୋରିଆ ଟର୍ମିନସ ଷ୍ଟେସନଠାରୁ କୁର୍ଲା ପର୍ଯ୍ୟନ୍ତ ବୈଦ୍ୟୁତିକ ରେଲଗାଡ଼ି ଚାଲିବାକୁ ଆରମ୍ଭ କରିଥିଲା । ପିଲାର ପୋଷ୍ଟବକ୍ସ ଇଂରାଜୀ ଔପନ୍ୟାସିକ ଆନ୍ଥୋନି ଟ୍ରୋଲପ (୧୮୧୫-୮୨) ଙ୍କ ପରାମର୍ଶ ଅନୁସାରେ ଇଂଲଣ୍ଡରେ ପିଲାର ପୋଷ୍ଟବକ୍ସ ସ୍ଥାପିତ ହୋଇଥିଲା । ସବୁଠାରୁ ପୁରାତନ ବାକ୍ସଟି ସେଣ୍ଟପିଟରେ ପୋର୍ଟଠାରେ ରହିଛି । ଏହା ୧୮୫୩ ମସିହା ଫେବୃଆରୀ ୮ ତାରିଖରେ ସ୍ଥାପିତ ହୋଇଥିଲା ।

## ହାଲୁକା ଘର—

ଓ୍ୱାସିଂଟନ୍‌ରେ ଗୋଟିଏ ପ୍ଲାଷ୍ଟିକ ଓ କାଠ ତିଆରି ଘର ରହିଛି । ଏହା ୨ ମହଲା ବିଶିଷ୍ଟ ଏବଂ ଏଥିରେ ୨୮ ଟି ପରିବାର ବାସ କରନ୍ତି । ଏହି ଘରଟି ଖୁବ୍ ହାଲୁକା ହୋଇଥିବାରୁ ଏହାକୁ ସହଜରେ ସ୍ଥାନାନ୍ତରିତ କରାଯାଇପାରେ ।

## ଇଜିପ୍ଟରେ ବର୍ଷା—

ଦକ୍ଷିଣ ଇଜିପ୍ଟରେ ପ୍ରାୟ ବର୍ଷା ହୁଏନି କହିଲେ ଚଳେ । କେତେକ ଅଞ୍ଚଳରେ ଏତେ କମ୍ ବର୍ଷା ହୁଏ ଯେ, କୌଣସି ଖୋଲା ଜାଗାରେ ଗ୍ଲାସ କପଟିଏ ରଖିଦେଲେ, ସେଇଟି ପୂର୍ଣ୍ଣ ହେବାକୁ ଅନ୍ତତଃ ୬୦ ବର୍ଷ ସମୟ ଲାଗିଯିବ ।

## ଆଖିହିଁ ସର୍ବସ୍ୱ—

ଭାରତ ମହାସାଗରର ଦକ୍ଷିଣାଂଶରେ ମାଡାଗାସ୍କର ଦ୍ୱୀପଠାରୁ ପ୍ରାୟ ୫୦୦ ମାଇଲ ଦୂରରେ 'ମାଉରିଟିଉସ୍' ନାମରେ ଗୋଟିଏ ଛୋଟ ଦ୍ୱୀପ ଅଛି । ଏହି ଦ୍ୱୀପରେ ଆଖୁ ବ୍ୟତୀତ ଅନ୍ୟ କୌଣସି ଫସଲ ହୁଏ ନାହିଁ । ତେଣୁ ସେଠିକା ଲୋକେ ଆଖୁ ରସକୁ ବିଭିନ୍ନ ପ୍ରକାର ଖାଦ୍ୟ ଦ୍ରବ୍ୟ ରୂପେ ବ୍ୟବହାର କରନ୍ତି । ଛେଦାକୁ ଜାଳେଣୀ ରୂପେ ବ୍ୟବହାର କରିବା ପାଇଁ ସାଙ୍ଗେ ସାଙ୍ଗେ ସେଇଥିରେ କଳ କାରଖାନାଗୁଡିକ ମଧ୍ୟ ଚାଲିଥାଏ ।

## ୨ୟ ମହାଯୁଦ୍ଧର ହିସାବ—

୨ୟ ମହାଯୁଦ୍ଧରେ ରତଥିବା ଦେଶମାନଙ୍କର ମୋଟରେ ୧୩୦୦୦୦୦୦୦୦୦୦୦ ଡଲାର ଖର୍ଚ୍ଚ ହୋଇଥିଲା । ୨୨୦ ଲକ୍ଷ ୬୦ ହଜାର ଲୋକ ମୃତ୍ୟୁ ବରଣ କରିଥିଲେ ଏବଂ ୩୪୩ ଲକ୍ଷ ଆହତ ହୋଇଥିଲେ ।

## ଗୁପ୍ତଧନର ସନ୍ଧାନ—

ମୋଗଲ ସମ୍ରାଟ୍ ଶାହାଜାହାନ ତାଙ୍କ ପୁତ୍ର ଆଉରଙ୍ଗଜେବଙ୍କ ପାଇଁ ଯେଉଁ ଅକଳନ ଧନ ସମ୍ପତ୍ତି ରଖିପାଇଥିଲେ, ସେଥିରୁ ଆଉରଙ୍ଗଜେବ କେତେକାଂଶ ତାଙ୍କ ଦାକ୍ଷିଣାତ୍ୟ ଅଭିଯାନରେ ଖର୍ଚ୍ଚ କରିଥିଲେ । ୧୭୩୯ ରେ ନାଦିର ଶାହ ଓ ୧୭୬୧ ରେ ଅହମ୍ମଦ ସା ଆବାଦାଲି ଏହି ଧନରୁ ବହୁ ଅଂଶ ଲୁଟି ନେଇଥିଲେ । ଅବଶିଷ୍ଟ ଗୋଟିଏ ସ୍ନାନାଗାର ଭବନ ତଳେ ପୋତି ଦିଆଯାଇଥିଲା । ସେହି ଭବନଟିର ବର୍ତ୍ତମାନର ମାଲିକଙ୍କ ନିକଟରେ ଥିବା ମାନଚିତ୍ର ଓ ଦଲିଲରେ ଉଲ୍ଲେଖ ଅଛି ଯେ ଏହି ସ୍ନାନାଗାର ତଳେ ପାଞ୍ଚ ହଜାର ସର୍ଣ୍ଣସିକ୍କା ( ଲାଲ ମୁଦ୍ରା ) ଲୁକ୍କାୟିତ ରହିଛି । ପ୍ରତିଟି ମୁଦ୍ରାର ଓଜନ ୫୮ ଗ୍ରାମ୍ ହୁନା, ଏହି ବିପୁଳ ଅର୍ଥର ମୂଲ୍ୟ ପ୍ରାୟ ୨ ଶହ କୋଟି ଟଙ୍କା ହେବ ।

## ପ୍ରାଚୀନ କ୍ଷୁର—

ଚେଟେନା ଇଙ୍ଗୁସ ସ୍ୱିୟଂଶାସିତ ପ୍ରଜାତନ୍ତ୍ରରେ ଭୂତତ୍ତ୍ୱବିଦ୍‌ମାନେ ଖ୍ରୀ. ପୂ. ୭ ମ ଓ ୧୦ ମ ଶତାବ୍ଦୀରେ ନିର୍ମିତ ଏକ ବ୍ରୋଞ୍ଜ କ୍ଷୁର ପାଇଛନ୍ତି । ଏହି କ୍ଷୁରର ବୟସ ପ୍ରାୟ ୨୮୦୦ ବର୍ଷ । ଏଥିରୁ ଜଣାଯାଏ ଯେ, ସେତେବେଳେ ସବୁ ଲୋକ ଦାଢ଼ି ରଖୁ ନ ଥିଲେ । ସେମାନଙ୍କ ମଧ୍ୟରୁ କେତେକ କ୍ଷୌର ମଧ୍ୟ ହେଉଥିଲେ ।

## ଟୋପିର ଇତିହାସ

ମଧ୍ୟ ଯୁଗରେ ଇଂଲଣ୍ଡରେ ଯେଉଁମାନେ ତୀର୍ଥ କରିବାକୁ ଯାଉଥିଲେ, ସେମାନଙ୍କୁ ଚିହ୍ନିବାର ଗୋଟିଏ ମାତ୍ର ଉପାୟ ଥିଲା, ମୁଣ୍ଡର ଟୋପି । ସେହିପରି ପାଲେଷ୍ଟାଇନ୍ ତୀର୍ଥ ଯାତ୍ରୀମାନେ ଶାମୁକା ଖଚିତ ଏକ ପ୍ରକାର ଟୋପି ମୁଣ୍ଡରେ ପିନ୍ଧୁଥିଲେ, କଳ କାରଖାନାର ଶ୍ରମିକମାନେ ପଶମ ତିଆରି ଟୋପିମାନ ମୁଣ୍ଡରେ ପିନ୍ଧୁଥିଲେ । ୟୁରୋପର ସ୍ତ୍ରୀ ଲୋକମାନେ ଘୋଡାରେ ଚଢ଼ିଗଲା ବେଳେ ମୁଣ୍ଡରେ ଟୋପି ପିନ୍ଧୁଥିଲେ, ପ୍ରାୟ ୪୦୦ ବର୍ଷ ତଳେ ଇଂଲଣ୍ଡର ସାଧାରଣ ଲୋକେ ମୁଣ୍ଡରେ ପଗଡ଼ି ପିନ୍ଧୁଥିଲେ ।

୧୮ ଶ ଶତାବ୍ଦୀ ବେଳକୁ ଇଂଲଣ୍ଡର ସ୍ତ୍ରୀଲୋକମାନେ ମୁଣ୍ଡରେ ପରଚୁଳା ପିନ୍ଧିବାକୁ ଆରମ୍ଭ କଲେ । ଏ ପରଚୁଳା ପୁଣି ଏମିତି ତିଆରି ହେଉଥିଲା ଯେ, ତା ଭିତରେ ରୀତିମତ ଗୋଟାଏ ବଗିଚା, ବଗିଚାରେ ଫାଟକ, ରାସ୍ତା, ଗଛଲତା ଏବଂ ତା ଭିତରେ ଛୋଟ ଘରଟିଏ ମଧ୍ୟ ରହୁଥିଲା । ଏ ଥିଲା କେବଳ ନକ୍ ସାର ବଗିଚା, ସେତେବେଳେ ଏହା ବେଶ୍ ଆଦୃତ ହେଉଥିଲା ।

ସେତିକିବେଳେ ଫ୍ରାନ୍ସ ଦେଶର ସ୍ତ୍ରୀଲୋକମାନେ 'ଫଣ୍ଟାଞ୍ଜ' ନାମରେ ଏକପ୍ରକାର ମସ୍ତକ ସଜ୍ଜା ପିନ୍ଧୁଥିଲେ । ଏହା ହାତ ଲମ୍ବା କାଠରେ ତିଆରି ହେଉଥିଲା । ମୁଣ୍ଡ ଉପରେ ଏହା ପ୍ରାୟ ୪ ଫୁଟ ଉଚ୍ଚ ହେଉଥିଲା । ସମ୍ରାଟ ଚତୁର୍ଦ୍ଦଶ ଲୁଇଙ୍କ ରାଜତ୍ୱ ସମୟରେ ଏହି ଫଣ୍ଟାଞ୍ଜର ଭାରି ଆଦର ଥିଲା ।

ପ୍ରାଚୀନ ଯୁଗରେ କୋରିଆ ଦେଶର ଜଣେ ରାଜା ମନେ ମନେ ଠିକ୍ କଲେ ଯେ, ଲୋକେ ଯଦି ଫସ୍‌ଫାସ୍ କରି କଥାବାର୍ତ୍ତା ନ ହୁଅନ୍ତି, ତେବେ କେହି କାହା ବିରୁଦ୍ଧରେ ଷଡ଼ଯନ୍ତ୍ର କରିପାରିବେ ନାହିଁ । ତେଣୁ ସେ ଆଇନ୍ କଲେ, ଏଣିକି ଲୋକମାନେ ମୁଣ୍ଡରେ ବଡ଼ ବଡ଼ ଚଉଡ଼ା ଟୋପି ପିନ୍ଧିବେ । ଯାହା ମୁଣ୍ଡରେ ଟୋପି ନଥିବ ସେ ଦଣ୍ଡପାଇବ ।

ଆଇନ୍ କାର୍ଯ୍ୟକାରୀ ହେବାପରେ ଦେଖାଗଲା, ଜଣେ ଅନ୍ୟ ଜଣଙ୍କ ସାଙ୍ଗରେ କଥାବାର୍ତ୍ତା ହେଲାବେଳେ ଖୁବ୍ ବଡ଼ ପାଟିରେ କହିବାକୁ ପଡୁଛି । ଯାହାଫଳରେ କେହିକାହା ବିରୁଦ୍ଧରେ ଆଉ ଷଡ଼ଯନ୍ତ୍ର କରି ପାରିଲେ ନାହିଁ ।

## ପ୍ରଥମ ଯୁଦ୍ଧ ପତାକା—

ଇଜିପ୍ଟର ଲୋକମାନେ ପ୍ରାୟ ୫୦୦୦ ବର୍ଷ ତଳେ ସର୍ବପ୍ରଥମେ ଯୁଦ୍ଧ କ୍ଷେତ୍ରରେ ଯୁଦ୍ଧ ପତାକା ବ୍ୟବହାର କରିଥିଲେ । ସେମାନେ ଗୋଟିଏ ଖୁଣ୍ଟରେ

ଲମ୍ବା ପତାକା ବାନ୍ଧି ଯୁଦ୍ଧ କ୍ଷେତ୍ରକୁ ନେଇ ଯାଉଥିଲେ । ଏପରି କଲେ ଶତ୍ରୁ ବିନାଶ ପାଇଁ ଦେବତାମାନେ ସେମାନଙ୍କୁ ସହାୟତା କରିବେ ବୋଲି ସେମାନଙ୍କର ବିଶ୍ୱାସ ଥିଲା ।

## ରୁପାର ରେଲଗାଡ଼ି—

ଗୋୟାଲିୟର ମହାରାଜାଙ୍କ ରାଜପ୍ରାସାଦରେ ଗୋଟିଏ ରୁପାର ଖେଳଣା ରେଲଗାଡ଼ି ଥିଲା । ଏଇଟି ବିଦ୍ୟୁତଶକ୍ତି ସାହାଯ୍ୟରେ ଚାଳିତ ହେଉଥାଏ । ମହାରାଜା ଏବଂ ତାଙ୍କ ଅତିଥିମାନେ ଯେତେବେଳେ ଟେବୁଲ ପାଖରେ ଖାଇବସନ୍ତି; ରେଲଗାଡ଼ିଟି ଟେବୁଲ ଚାରିପାଖରେ ଘୂରୁଥାଏ । ସେଥିରେ ସବୁପ୍ରକାର ଖାଦ୍ୟପଦାର୍ଥ ଲଦି ଦିଆଯାଇଥାଏ । ଯାହାର ଯେଉଁ ଜିନିଷ ଦରକାର ପଡ଼େ, ସେ ତାହା ଗାଡ଼ି ଉପରୁ ନେଇ ଖାଉଥାନ୍ତି । କାହାକୁ ମାଗିବାକୁ ପଡ଼େନା ।

## ବୁୟେନସ୍ ଆୟର୍ସ—

ଆର୍ଜେଣ୍ଟିନାର ରାଜଧାନୀ ଏବଂ ଦକ୍ଷିଣ ଆମେରିକାର ସବୁଠାରୁ ବଡ଼ ସହର ହେଉଛି 'ବୁୟେନସ୍ ଆୟାର୍ସ' । ସ୍ପେନ ଦେଶର ଲୋକଙ୍କଦ୍ୱାରା ଏହା ୧୬ଶ ଶତାବ୍ଦୀରେ ସ୍ଥାପିତ ହୋଇଥିଲା । ଏଠାରେ ଇଂରେଜ, ଜର୍ମାନ, ଇହୁଦୀ, ଯୁଗୋସ୍ଲାଭ ଓ ପୋଲାଣ୍ଡର ଅଧିବାସୀ ବାସକରନ୍ତି; କିନ୍ତୁ ଏସିଆ ମହାଦେଶର କୌଣସି ଅଧିବାସୀ ଏଠାରେ ନାହାନ୍ତି ।

## ଦୈନିକ ସମ୍ବାଦପତ୍ର—

ମିଳିତ ଜାତିସଂଘର ଶିକ୍ଷା-ବିଜ୍ଞାନ-ସାଂସ୍କୃତିକ ଅନୁଷ୍ଠାନ ତରଫରୁ ପ୍ରକାଶିତ ଏକ ହିସାବରୁ ଜଣାପାଇଛି ଯେ, ସମଗ୍ର ପୃଥିବୀରେ ଦୈନିକ ୧୯ କୋଟି ୩୦ ଲକ୍ଷ ସମ୍ବାଦପତ୍ର ପ୍ରକାଶ ପାଇଥାଏ । ଏଥିରୁ ଶତକଡ଼ା ୨୦ ଭାଗ କେବଳ ଆମେରିକାରେ ପ୍ରକାଶିତ ହୋଇଥାଏ ।

## ବିଭିନ୍ନ ଭାଷାର ବର୍ଣ୍ଣମାଳା—

ଚୀନ ବର୍ଣ୍ଣମାଳାରେ—୨୧୪, ହିନ୍ଦୀ ଓ ସଂସ୍କୃତରେ—୪୪, ଉର୍ଦ୍ଦୁ ଓ ଋଷ ବର୍ଣ୍ଣମାଳାରେ ୩୬, ଫାରସୀରେ—୩୨, ଆରବୀ ଓ ସ୍ପେନସ୍‌ରେ— ୮, ଜେମାନ ଓ ଇଂରାଜୀରେ—୨୬, ଫ୍ରାନ୍‌ସିସ୍ ବର୍ଣ୍ଣମାଳାରେ—୨୫ଟି ଏବଂ ଲାଟିନ୍ ବର୍ଣ୍ଣମାଳାରେ—୨୪ଟି ଅକ୍ଷର ଅଛି ।

## ସିନ୍ଧୁ ସଭ୍ୟତାର ଭାଷା--

ସୋଭିଏଟ୍ ୟୁନିୟନର ବିଶେଷଜ୍ଞମାନଙ୍କ ମତରେ ସିନ୍ଧୁ ସଭ୍ୟତାର ଭାଷା, ବର୍ତ୍ତମାନର ତାମିଲ, ମାଲୟାଲମ୍ କିମ୍ବା କାନାଡା ଭାଷା ସହିତ ସମାନ ହୋଇପାରେ ।

## ବିଭିନ୍ନ ଜାତିର ଧର୍ମଗ୍ରନ୍ଥ—

ବେଦ, ଉପନିଷଦ ଓ ଗୀତା ଆଦି ହେଉଛି ହିନ୍ଦୁମାନଙ୍କର ଧର୍ମଗ୍ରନ୍ଥ । ସେହିପରି ମୁସଲମାନ ଧର୍ମଗ୍ରନ୍ଥ କୋରାନ୍, ଖ୍ରୀଷ୍ଟିଆନ୍ ଧର୍ମଗ୍ରନ୍ଥ ବାଇବେଲ, ଯିହୁଦୀ ଧର୍ମଗ୍ରନ୍ଥ ତୋରାହ, ଶିଖ୍ ଧର୍ମଗ୍ରନ୍ଥ ଗ୍ରନ୍ଥସାହେବ ଏବଂ ପାର୍ସି ଧର୍ମଗ୍ରନ୍ଥ ଜେନ୍ଦଆଭେସ୍ତା ।

## ଗ୍ରନ୍ଥସାହେବ—

ଶିଖମାନେ ତାଙ୍କ ଧର୍ମଗ୍ରନ୍ଥ 'ଗ୍ରନ୍ଥସାହେବ'କୁ ଅତି ପବିତ୍ର ମନେକରନ୍ତି ଏବଂ ଠିକ ଜଣେ ସମ୍ରାଟଙ୍କ ପରି ସମ୍ମାନ ଦିଅନ୍ତି । ପ୍ରତିଦିନ ସକାଳୁ 'ଗ୍ରନ୍ଥସାହେବ'କୁ ଆସନ ଉପରେ ପ୍ରତିଷ୍ଠା କରଯାଏ । ତାପରେ କେତେଜଣ ତାର ଚାରିପାଖରେ ଯେମିତିକି ମୟୂର ଚନ୍ଦ୍ରକାରେ ତିଆରି ବିଞ୍ଚଣାରେ ସାରାଦିନ ବିଞ୍ଚୁଥାନ୍ତି । ଜଣେ ଅର୍କେଷ୍ଟ୍ରା ବାଦକ ମଧ୍ୟ ମଧୁର ସଙ୍ଗୀତ ପରିବେଷଣ କରୁଥାନ୍ତି । ଗ୍ରନ୍ଥସାହେବ ନିକଟରେ ମିଷ୍ଟାନ୍ନ ଭୋଗ ମଧ୍ୟ କରଯାଏ । ବିଶ୍ରାମ କକ୍ଷକୁ ଯିବା ପର୍ଯ୍ୟନ୍ତ ସାରାଦିନ ଏହି ସେବାକାର୍ଯ୍ୟ ଚାଲିଥାଏ ।

## ଜାପାନୀମାନେ ବାମରୁ ଲେଖନ୍ତି—

ଭାରତୀୟ ବହିମାନଙ୍କରେ ଯେଉଁଟି ଶେଷ ପୃଷ୍ଠା, ଜାପାନୀମାନଙ୍କର ସେଇଟି ପ୍ରଥମ ପୃଷ୍ଠା ହୋଇଥାଏ । ସେମାନେ ଡାହାଣରୁ ବାମକୁ ଲେଖନ୍ତି । ପୁଣି ଧାଡିଗୁଡିକ ସମାନ୍ତରାଳ ନହୋଇ ଉପରୁ ତଳକୁ ଲେଖା ହୋଇଥାଏ ।

## ଓଡ଼ିଆଭାଷାର ବୃହତ୍ତମ ପୁସ୍ତକ—

ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ହେଉଛି ଓଡିଆ ଭାଷାର ବୃହତ୍ତମ ପୁସ୍ତକ । ଏହି ପୁସ୍ତକଟି ୭ ଖଣ୍ଡରେ ବିଭକ୍ତ । ଏଥିରେ ସର୍ବମୋଟ ୯୫୦୦ ପୃଷ୍ଠା ଓ ୧ ଲକ୍ଷ ୮୫ ହଜାର ଶବ୍ଦ ରହିଛି । ଗୋପାଳ ଚନ୍ଦ୍ର ପ୍ରହରାଜ ଏହି ପୁସ୍ତକର ପ୍ରଣେତା ।

## ପୁରାଣର ବିଭାଗ—

- ମହାଭାରତ ୧୮ ଖଣ୍ଡରେ ବିଭକ୍ତ ଏବଂ ପ୍ରତ୍ୟେକ ଖଣ୍ଡକୁ ପର୍ବ କୁହାଯାଏ ।
- ରାମାୟଣ ୭ ଖଣ୍ଡରେ ବିଭକ୍ତ ଏବଂ ପ୍ରତ୍ୟେକ ଖଣ୍ଡକୁ 'କାଣ୍ଡ' କୁହାଯାଏ ।
- ଭାଗବତ ୧୨ ଖଣ୍ଡରେ ବିଭକ୍ତ ଏବଂ ପ୍ରତ୍ୟେକ ଭାଗକୁ 'ସ୍କନ୍ଦ' କୁହାଯାଏ ।
- ନୃସିଂହ ପୁରାଣ ୭ ଭାଗରେ ବିଭକ୍ତ ଏବଂ ପ୍ରତ୍ୟେକ ଭାଗକୁ 'ରତ୍ନାକର' କୁହାଯାଏ ।

## ଓଜନଦାର ଗ୍ରନ୍ଥ —

ଖ୍ରୀଷ୍ଟିଆନ୍‌ମାନଙ୍କ ଧର୍ମଗ୍ରନ୍ଥ 'ବାଇବେଲ' ହେଉଛି ସବୁଠାରୁ ଓଜନଦାର ଗ୍ରନ୍ଥ । ଏହାର ଓଜନ ପ୍ରାୟ ୬୯୦ କି ଗ୍ରା:

## ଠିଆହେବାର ରେକର୍ଡ—

ଉତ୍ତରପ୍ରଦେଶ ଶାହାଜାହାନପୁର ଶ୍ରବଣନାଥ ମନ୍ଦିରର ଜଣେ ସନ୍ନ୍ୟାସୀ ସାଧାରଣରେ ଖଡେଶ୍ୱରୀବାବା ନାମରେ ପରିଚିତ । ଏହି ସନ୍ନ୍ୟାସୀ ଦୀର୍ଘ ୧୮ବର୍ଷ କାଳ ଠିଆହୋଇ ରେକର୍ଡ ସୃଷ୍ଟି କରିଛନ୍ତି । ନିତ୍ୟକର୍ମ ସମାପନ କରିବା, ବିଶ୍ରାମ ନେବା ଆଦି ସବୁକାର୍ଯ୍ୟ ସେ ଠିଆ ହୋଇ କରିଥାନ୍ତି । କେବଳ ଫଳ ଓ ସବୁଜ ପରିବା ତାଙ୍କର ଦୈନନ୍ଦିନ ଖାଦ୍ୟ ।

## ଚା'ଖିଆରେ ରେକର୍ଡ—

୧୯୭୦ ମସିହା ସେପ୍‌ଟେମ୍ବର ୬୩ ତାରିଖ ଦିନ, ନିଉଜିଲ୍ୟାଣ୍ଡର ଗୋଟିଏ କଫି ହାଉସ୍‌ର ମାଲିକ ୬ ଘଣ୍ଟା ୯ମିନିଟ୍‌ରେ ୮୧କପ୍ ଚା' ଖାଇ ବିଶ୍ୱ-ରେକର୍ଡ ସୃଷ୍ଟି କରିଥିଲେ ।

## ବିଫଳତାରେ ରେକର୍ଡ—

ନାଗପୁରର ଏଲ. ଡି. ଥାଟେ ନାମରେ ଜଣେ ବ୍ୟକ୍ତି ରାଜନୀତି କ୍ଷେତ୍ରରେ ୫୧୧ଥର କାରାବରଣ କରି ରେକର୍ଡ ସୃଷ୍ଟି କରିଥିଲେ । ବିଭିନ୍ନ ସମୟରେ ଧର୍ମ ପରିବର୍ତ୍ତନ କରି ମଧ୍ୟ ସେ ରେକର୍ଡ ସୃଷ୍ଟି କରିପାରିଛନ୍ତି । ତାଙ୍କପରି ଅଉ କୌଣସି ଲୋକ ଏତେଥର ଧର୍ମ ପରିବର୍ତ୍ତନ କରିନାହାନ୍ତି । ସେହିପରି ଭାରତର ରାଷ୍ଟ୍ରପତି ପଦବୀଠାରୁ ମ୍ୟୁନିସିପାଲିଟି ନିର୍ବାଚନ ପର୍ଯ୍ୟନ୍ତ ପ୍ରତ୍ୟେକରେ ସେ ଅଂଶ-

ଗ୍ରହଣ କରିଛନ୍ତି, କିନ୍ତୁ କୌଣସିଟିରେ ସଫଳତା ଲାଭ କରିନାହାନ୍ତି । ସେ ହେଉଛନ୍ତି ପ୍ରଥମ ବ୍ୟକ୍ତି, ଯେ କି ବିଫଳତାରେ ରେକର୍ଡ ସୃଷ୍ଟି କରିଛନ୍ତି ।

### ଅଚେତତାର ରେକର୍ଡ—

ସୁଶାନ ଗୋଲଣ୍ଡ ନାମକ ଜଣେ ୧୨ବର୍ଷ ବୟସ୍କା ଯୁବତୀ ଏକ ମଟର ଦୁର୍ଘଟଣାରେ ଆହତ ହୋଇ ସଂଜ୍ଞାହୀନା ହୋଇ ପଡ଼ଲେ । ସେହି ଅବସ୍ଥାରେ ତାଙ୍କୁ ଲଣ୍ଡନଠାରୁ ଅଳ୍ପ ଦୂରରେ ଥିବା ଏକ ଡାକ୍ତରଖାନାରେ ଭର୍ତ୍ତି କରାଯାଇଥିଲା । ସେଠାରେ ଦୀର୍ଘ ୫୯୪ଦିନ ଅଚେତ ଅବସ୍ଥାରେ ରହିବା ପରେ ତାଙ୍କର ମୃତ୍ୟୁହେଲା । ଦୀର୍ଘଦିନ ଅଚେତ ରହି ସେ ପୃଥିବୀରେ ରେକର୍ଡ ସୃଷ୍ଟି କରିଗଲେ ।

### ନିର୍ବୋଧ ରାଜା—

ଆଫ୍ରିକା ମହାଦେଶର ଉଗାଣ୍ଡା ରାଜ୍ୟରେ 'ମଟେସା' ବୋଲି ଜଣେ ରାଜା ରାଜତ୍ୱ କରୁଥିଲେ । ତାଙ୍କ ମାଆଙ୍କର ସବୁବେଳେ ଦାନ୍ତମୂଳେ ଯନ୍ତ୍ରଣା ହେଉଥିଲା । ତାଙ୍କୁ ଜଣେ କେହି କହିଲା ଯେ, ଯଦି ସେ ରାଜଧାନୀର ସମସ୍ତ ଲୋକଙ୍କୁ ଥରେ ଲେଖାଏଁ ଭିକ୍ଟୋରିଆ ହ୍ରଦରେ ବୁଡ଼ାଇ ଆଣିବେ, ତେବେ ମାଆଙ୍କ ଦାନ୍ତ ଭଲ ହୋଇଯିବ । ନିର୍ବୋଧ ରାଜା ସେହି ଅନୁସାରେ ରାଜଧାନୀର ସମସ୍ତ ଲୋକଙ୍କୁ ହ୍ରଦ ଜଳରେ ବୁଡ଼ାଇ ଆଣିଥିଲେ ।

ପାରସ୍ୟ ଦେଶର ଜରକସିଜ୍ ବୋଲି ଜଣେ ରାଜା ନିଜ ରାଜ୍ୟର ନଈ ଉପରେ ଉପରେ ପୋଲଟିଏ ତିଆରି କରିଥିଲେ । କିନ୍ତୁ ବନ୍ୟାଜଳରେ ପୋଲଟି ଭସି ଯିବାରୁ ସେ ଏକଦମ୍ ରାଗିଗଲେ । ତେଣୁ ସେ ୩୦୦ ଲୋକ ଲଗାଇ ନଦୀକୁ ମାସେ ପର୍ଯ୍ୟନ୍ତ ଚାବୁକରେ ପିଟିବାକୁ ଆଦେଶ ଦେଇଥିଲେ ।

### ସ୍ୱପ୍ନଯୋଗୁଁ ମୁଣ୍ଡକାଟ—

ମାଡାଗାସ୍କରର ମହାରାଣୀ ରାନଭଲନା ତାଙ୍କ ରାଜ୍ୟରେ ଗୋଟିଏ ବିଚିତ୍ର ଆଇନ କରିଥାନ୍ତି । ଯଦି ସେ ସ୍ୱପ୍ନରେ କୌଣସି ଲୋକକୁ ଦେଖିବାକୁ ପାଇବେ; ତେବେ ତାର ମୁଣ୍ଡକାଟ ହେବ । ଏଥିପାଇଁ ଲୋକେ ତାଙ୍କ ପାଖକୁ ଆସିବାକୁ ଭୟ କରୁଥିଲେ । ରାଣୀ ଯେଉଁଆଡ଼େ ବୁଲି ଯାଉଥିଲେ ; ସେଠିକା ଲୋକେ ଦୁଆର ଝରକା ବନ୍ଦ କରି ଘରେ ପଶି ରହୁଥିଲେ ।

## ଦାନ ଓ ମୃତ୍ୟୁଦଣ୍ଡ—

ପାକିସ୍ଥାନର ରାଓଲପିଣ୍ଡିରେ ମୁରାଦ ଖାଁ ଶାସନ କରୁଥିବା ବେଳେ ତାଙ୍କ ପାଖକୁ ଯଦି କୌଣସି ଭିକାରି କିଛି ମାଗିବାକୁ ଯାଏ, ତେବେ ସେ ତାକୁ ଲକ୍ଷେରୁ ଅଧିକ ଟଙ୍କା ଦେଉଥିଲେ, କିନ୍ତୁ ଭିକାରିଟି ମାଗିଲା ବେଳେ ଯଦି ତାଙ୍କ ପାଖରେ ଟଙ୍କା ନ ଥାଏ, ତେବେ ସେ ଭିକାରିକୁ ମୃତ୍ୟୁଦଣ୍ଡ ଦେଉଥିଲେ ।

## ହସପାଇଁ ଜେଲଦଣ୍ଡ—

ଫ୍ରାନ୍‌ସିସ୍ ଡସଲଡନ୍ ନାମରେ ଜଣେ ଧନୀ ବ୍ୟକ୍ତି । ଫ୍ରାନ୍‌ସର ସମ୍ରାଟ ଚତୁର୍ଦ୍ଦଶ ଲୁଇଙ୍କ ଚନ୍ଦାମୁଣ୍ଡକୁ ଦେଖି ହସିଦେଇଥିଲେ ବୋଲି ତାଙ୍କୁ କାରାବରଣ କରିବାକୁ ପଡିଥିଲା । ପ୍ୟାରିସ୍‌ର ବାଷ୍ଟାଇଲ୍ ଦୁର୍ଗରେ ସେ ୨୯ ବର୍ଷ ପର୍ଯ୍ୟନ୍ତ ବନ୍ଦୀ ହୋଇ ରହିଥିଲେ ।

## ନାନା ସାହେବଙ୍କ ହୁକୁମ୍—

ପୁନାର ଶାସକ ପେଶବା ନାନା ସାହେବ ହୁକୁମ୍ ଦେଇଥିଲେ ଯେ, ସେ ଯେତେବେଳେ ସକାଳୁ ନିଦରୁ ଉଠିବେ, ସେତେବେଳେ ଘଣ୍ଟାରେ ୮ଟା ବାଜିବ । ତାପରେ ୯ଟା, ୧୦ଟା ବାଜି ଚାଲିବ ଏବଂ ସେହି ଅନୁସାରେ ରାଜକାର୍ଯ୍ୟ ମଧ୍ୟ ପରିଚାଳିତ ହେବ । ଏହି ଆଦେଶ ଯୋଗୁଁ ରାଜ୍ୟର ଲୋକେ, କେତେବେଳେ ଆଠଟା ବାଜିବ, ତାକୁହିଁ ଅପେକ୍ଷା କରି ରହୁଥିଲେ ।

## ପାରା ବାହାଘର—

ଭାରତର ପଶ୍ଚିମାଞ୍ଚଳ ରାଜ୍ୟ ବରୋଦାରେ ଗାଇକୋୟାଡ୍ ରାଜାମାନେ ରାଜତ୍ୱ କରୁଥିବା ସମୟରେ ୧୮୫୬ ରୁ ୧୮୬୦ ମସିହା ପର୍ଯ୍ୟନ୍ତ ପାରା ବିଭାଘର ଖୁବ୍ ଜାକଜମକରେ ହେଉଥିଲା । ରାଜାଙ୍କର ଏ ଥିଲା ଗୋଟାଏ ବିଚିତ୍ର ଖିଆଲ । ବର୍ଷରେ ୩ ଥର ପାରା ବଭାଘର ହେଉଥିଲା ଏବଂ ଏଥିରେ ପ୍ରାୟ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ ହେଉଥିଲା । ପାରା ବର ଓ ପାରା କନିଆକୁ ହାତୀ ପିଠିରେ ବସାଇ ମହାସମାରୋହରେ ବିବାହ ମଣ୍ଡପକୁ ନିଆଯାଉଥିଲା ଏବଂ ବୈଦିକ ରୀତିରେ ବିବାହ କାର୍ଯ୍ୟ ସଂପୂର୍ଣ୍ଣ ହେଉଥିଲା । ଏହି ବିବାହ ଶୋଭାଯାତ୍ରାରେ ରାଜ୍ୟର ହଜାର ହଜାର ଲୋକ ଯୋଗ ଦେଉଥିଲେ ।

## ଗଣେଶଙ୍କ ନିମନ୍ତ୍ରଣ—

ରାଜସ୍ଥାନର ଐତିହାସିକ ରଣଥମ୍ଭୋର ଦୁର୍ଗ ଉପରେ ୧୩ଶ ଶତାବ୍ଦୀରୁ ପ୍ରତିଷ୍ଠିତ ଗଣେଶ ମୂର୍ତ୍ତିକୁ ସମସ୍ତ ରାଜସ୍ଥାନର ଲୋକେ ଭକ୍ତି ଓ ବିଶ୍ୱାସ କରିଥାନ୍ତି । ତେଣୁ ସେମାନେ କୌଣସି ବିବାହ ଉତ୍ସବ କିମ୍ବା ସେହିପରି କୌଣସି ଉତ୍ସବାନୁଷ୍ଠାନ ହେଲେ ପ୍ରଥମେ ପତ୍ର ମାଧ୍ୟମରେ ଗଣେଶଙ୍କୁ ନିମନ୍ତ୍ରଣ କରିଥାନ୍ତି । ପ୍ରତି ସପ୍ତାହରେ ଗଣେଶଙ୍କ ନାମରେ ପ୍ରାୟ ଶହେ ଖଣ୍ଡ ନିମନ୍ତ୍ରଣ ପତ୍ର ଡାକ ଘରକୁ ଆସି ଥାଏ । ସେଠାର ପୋଷ୍ଟମ୍ୟାନ୍‌ଟି ପ୍ରତି ସପ୍ତାହରେ ଦୀର୍ଘ ୧୫ କି. ମି. ଗହଳ ଜଙ୍ଗଲ ଏବଂ ପାହାଡ ପର୍ବତ ଅତିକ୍ରମ କରି ଗଣେଶଙ୍କ ମନ୍ଦିରରେ ଚିଠିଗୁଡିକ ଦେଇଆସେ ।

## ବିଚିତ୍ର ଜନ୍ମ କାହାଣୀ—

କାଲିଫର୍ଣ୍ଣିଆରେ କେନେଥ୍ କନ୍‌ସନ୍ ନାମକ ଜଣେ ମହିଳାଙ୍କର ପ୍ରଥମ କନ୍ୟାଟି ୧୯୫୬ ମସିହା ଏପ୍ରିଲ ୨୦ ତାରିଖରେ ଜନ୍ମ ହେଲା । ୧୯୫୮ ମସିହା ଏପ୍ରିଲ ୨୦ ତାରିଖରେ ଏହାର ୨ ବର୍ଷ ପରେ ଅର୍ଥାତ୍ ୧୯୬୦ ମସିହା ଏପ୍ରିଲ ୨୦ ତାରିଖରେ ୩ୟ କନ୍ୟାଟି ଭୂମିଷ୍ଠ ହେଲା । ଆଉ ଚତୁର୍ଥ କନ୍ୟାଟି ଯେଉଁଦିନ ଜନ୍ମ ଲାଭ କଲା; ସେଦିନ ହୋଇଥିଲା ୧୯୬୧ ମସିହା ଏପ୍ରିଲ ୨୦ ତାରିଖ । କେଡେ ବିଚିତ୍ର ସତେ ।

## କନିଷ୍ଠ ପିତାମାତା—

ଚୀନ ଦେଶର ଫୁକିଏନ୍ ଅଞ୍ଚଳରେ 'ସି' ନାମକ ଏକ ଜାତିର ଗୋଟିଏ ଚାଷୀ ପରିବାରରେ ପିତାର ବୟସ ଥିଲା ୯ ଏବଂ ମାତାର ବୟସ ୮ । ସେମାନଙ୍କର ସୁସ୍ଥସବଳ ସନ୍ତାନଟି ଜନ୍ମ ହୋଇଥିଲା ୧୯୧୦ ମସିହା ଜାନୁଆରୀ ମାସରେ । ସେହିପରି ଆଫ୍ରିକାର ଜୋଲବାର ଦ୍ୱୀପରେ 'ଆକ୍‌କିବୀ' ନାମକ ଏକ ଗ୍ରାମ୍ୟ ପ୍ରଧାନ ପରିବାରରେ ୧୬ ବର୍ଷ ବୟସ୍କା ଏକ ଯୁବତୀର ନାତ ନାତୁଣୀ ଥିଲେ । ଏହି ଯୁବତୀଟି ୮ ବର୍ଷ ବୟସରେ ତାର ପ୍ରଥମ ସନ୍ତାନଟିକୁ ଜନ୍ମ ଦେଇଥିଲା ।

## ଚାଳିଶ ବର୍ଷ ଗର୍ଭଧାରଣ—

ଋଷିଆର ଆଜରବୈଜାନ ପ୍ରଦେଶର ରାଜଧାନୀ ବାକୁ ସହରର ଜଣେ ଯୌବ ତୁର୍କ ରମଣୀ ୪୦ ବର୍ଷ ଗର୍ଭ ଧାରଣ କଲାପରେ ଅସ୍ତ୍ରୋପଚାର ଦ୍ୱାରା

ଗର୍ଭ ନଷ୍ଟ କରିଥିଲେ । ସେ ନିଶ୍ୱାସ ନେବାରେ କଷ୍ଟ ଅନୁଭବ କରିବାରୁ ଡାକ୍ତରଖାନା ଯାଇଥିଲେ । ଡାକ୍ତରମାନେ ଅସ୍ତ୍ରୋପଚାର କରି ଦେଖିଲେ ଯେ, ତାଙ୍କ ଫୁସ୍‌ଫୁସ୍‌ରେ ଗୋଟିଏ ପିଲା ରହିଛି । ଏହି ପିଲାଟିର ମୁଣ୍ଡରେ ବାଳ ଏବଂ ପାଟିରେ ଦାନ୍ତ ଉଠିଥିଲା ।

ଡାକ୍ତରମାନଙ୍କ ମତରେ ଉକ୍ତ ଡ୍ରାଇଭରଙ୍କ ମାଆଙ୍କ ପେଟରେ ୪୦ ବର୍ଷ ତଳେ ଏକ ଯାଆଁଳା ସନ୍ତାନ ସୃଷ୍ଟି ହୋଇଥିଲା, କିନ୍ତୁ କୌଣସି କାରଣରୁ ସେଇଟି ଏହି ଡ୍ରାଇଭରଙ୍କ ଶରୀରରେ ରହିଯାଇଥିଲା । ଦୀର୍ଘ ଏତେବର୍ଷ ପରେ ସେଇଟି ବଢ଼ିବାକୁ ଆରମ୍ଭ କରିବାରୁ ଡ୍ରାଇଭର କଷ୍ଟ ଅନୁଭବ କରୁଥିଲେ ।

ସବୁକିଛି ଜଳିଗଲା—

ଫ୍ରାନ୍‌ସର ବ୍ରୁଏକ୍ରୋଇକ୍‌ସନଭରଟ୍ ନାମକ ସ୍ଥାନରେ ଗୋଟିଏ କାରଖାନାରେ ୧୯୩୫ ମସିହା ସେପ୍‌ଟେମ୍ବର ୨୨ ତାରିଖ ଦିନ ଅକସ୍ମାତ୍ ନିଆଁ ଲାଗିଗଲା । ଫଳରେ କାରଖାନାର ସବୁ ଜିନଷ ପୋଡ଼ି ପାଉଁଶ ହୋଇଗଲା; କିନ୍ତୁ ଆଶ୍ଚର୍ଯ୍ୟର କଥା; କେବଳ ନିଆଁ ( The fire ) ଲେଖାଥିବା ଖଣ୍ଡେ ବହି ସମ୍ପୂର୍ଣ୍ଣ ଅକ୍ଷତ ଅବସ୍ଥାରେ ରହିଯାଇଥିଲା ।

ଭବିଷ୍ୟତବାଣୀ ସତ ହେଲା—

ଷ୍ଟିଫେନ୍ ସାଉ ନାମରେ ଇଂଲଣ୍ଡର ଜଣେ ଲେଖକ ୧୯୩୧ ମସିହାରେ 'ଓ୍ୱାଲଏଣ୍ଡ କେ' ନାମରେ ଗୋଟିଏ ବହି ପ୍ରକାଶ କରିଥିଲେ । ସେଥିରେ ସେ ଲେଖିଥିଲେ ଯେ, ୨ୟ ବିଶ୍ୱଯୁଦ୍ଧ ୧୯୩୯ ମସିହା ସେପ୍‌ଟେମ୍ବର ୩ ତାରିଖରୁ ଆରମ୍ଭ ହେବ । ପ୍ରକୃତରେ ତାଙ୍କ ଭବିଷ୍ୟତ ବାଣୀ ସତ ହେଲା । ନିର୍ଦ୍ଧାରିତ ସମୟରେ ୨ୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯାଇଥିଲା ।

ଫୋନ୍‌ର ଫନ୍—

ଇଂଲଣ୍ଡରେ ପୋଲିସ୍ ସାହାଯ୍ୟ ଦରକାର ହେଲେ ଟେଲିଫୋନ୍ ନମ୍ବର ୯୯୯କୁ ଡାଏଲ କରିବାକୁ ପଡ଼ିଥାଏ । ଦିନେ ପୋଲିସ୍‌ମାନେ ଫୋନ୍ ପାଇଲେ ମରମଣ୍ଡ ହେଉଛି, ଗୁଳି ଚାଲୁଛି, ଶୀଘ୍ର ଆସନ୍ତୁ ।

ଫୋନ୍ ପାଇବାପରେ ଧାଇଁ ଧାଇଁ ତିନିଖଣ୍ଡ ପୋଲିସ୍‌ଗାଡ଼ି ଆସି ବ୍ରିକ୍‌ସନର ଏକ ଫ୍ଲାଟରେ ପହଞ୍ଚିଗଲା । ପୋଲିସ୍ ଅଫିସରମାନେ ଘର ଭିତରକୁ ପଶିଯାଇ ଦେଖିଲେ, ଗୃହକର୍ତ୍ତ୍ରୀ ରସିନା ସ୍ମଲ୍‌ସଙ୍କ ହାତରେ ବ୍ୟାଣ୍ଡେଜ୍ ବନ୍ଧା ହୋଇଛି ଏବଂ ତାଙ୍କ ଛୋଟ ଝିଅଟି ଚଉକି ପଛରେ ଠିଆହୋଇ ଆଖି ମଳିମଳି କାନ୍ଦୁଛି । ଏତିକିବେଳେ ପାଖଘରୁ ଗୁଳି ଫୁଟିବାର ଶବ୍ଦ ଶୁଣି ଦୁଇଜଣ ପୋଲିସ୍ ଅଫିସର ଘର ଭିତରକୁ ପଶିଯାଇ ଦେଖିଲେ ଯେ, ଟେଲିଭିଜନରୁ ଗୁଳିଶବ୍ଦ ଆସୁଛି । ସେମାନେ ଫେରିଆସି ଘଟଣା ଜାଣିବାକୁ ଚାହିଁବାରୁ ଶ୍ରୀମତୀ ରସ୍ତର୍ଡ କହିଲେ—"ମୁଁ ଝିଅକୁ ଚପଡ଼ାଟାଏ ମାରିବାରୁ ସେ ଫୋନ୍ କରିଛି ।" "ମୋ

ହାତରେ ଚମ୍. ବାଜି ଯିବାରୁ ବ୍ୟାଣ୍ଡେଜ୍ କରୁଛି ।" ଏକଥା ଶୁଣି ପୋଲିସ ଅଫିସରମାନେ ହସିଦେଇ ଚାଲିଗଲେ ।

ପୋର୍ଟସମାଉଥ୍‌ର ଜଣେ ମହିଳା ୯୯୯ ନମ୍ବରକୁ ଫୋନ୍‌କରି କହିଲେ, ମୋ ଦାନ୍ତ ମୂଳରେ ଭାରି ଯନ୍ତ୍ରଣା ହେଉଛି । ଶୀଘ୍ର ଆମ୍ବୁଲାନ୍ସ ପଠାନ୍ତୁ । ଆଉ ଜଣେ ଫୋନ୍‌କରି କହିଲେ,ଆମ ଘର ଝରକା ପାଖରେ ଚଢ଼େଇଟାଏ ବସା-ବାନ୍ଧିଥିବାରୁ ପିଲାଙ୍କ ଶୋଇବାରେ ବ୍ୟାଘାତ ସୃଷ୍ଟି ହେଉଛି । ଶୀଘ୍ର ବ୍ୟବସ୍ଥା କରନ୍ତୁ ।

ଗୋଟିଏ ଛୋଟ ପିଲାର କାନ୍ଦଣା ସ୍ୱର ଫୋନ୍‌ରେ ଭାସି ଆସିବାରୁ, ପୋଲିସ ଅଫିସରମାନେ ଚଟାପଟ ଯାଇ ପିଲାଟି ପାଖରେ ପହଞ୍ଚିଗଲେ । ପୋଲିସଙ୍କୁ ଦେଖି ପିଲାଟି କାନ୍ଦକାନ୍ଦ ହୋଇ କହିଲା—ମୁଁ ମୋର ପଢ଼ା କରି-ପାରିନାହିଁ । ସାର ମୋତେ ମାଡ଼ଦେବେ ।

ଲଣ୍ଡନ ପୋଲିସ ଏହି ଧରଣର ବିଚିତ୍ର ଫୋନ ପ୍ରତି ସପ୍ତାହରେ ପ୍ରାୟ ୨୦ ଲକ୍ଷ ପାଇଥାନ୍ତି ।

**ଛୁରୀ ସହିତ ବିବାହ—**

ଲାଓସ୍ ( ଦକ୍ଷିଣ ପୂର୍ବ ଏସିଆ )ର 'ଖା' ଆଦିବାସୀ ସମ୍ପ୍ରଦାୟରେ ଏକ ପ୍ରଥା ଅଛି ଯେ, ଝିଅକୁ ୧୨ବର୍ଷ ହୋଇଗଲେ, ତାର ନିଶ୍ଚୟ ବିବାହ ହେବ, କିନ୍ତୁ ସେହି ସମୟରେ ଯଦି କୌଣସି ବରପାତ୍ର ନମିଳନ୍ତି ତେବେ ତାକୁ ଗୋଟିଏ ଝରଣା କୂଳକୁ ନିଆଯାଏ । ସେହି ଝରଣା ଜଳରେ ଯେଉଁ ଛୁରୀ ପଡ଼ିଥାଏ; ତାରି ସାଙ୍ଗରେ ଝିଅଟିକୁ ସାମାଜିକ ପ୍ରଥା ଅନୁସାରେ ବିବାହ କରି ଦିଆଯାଏ । ପ୍ରକୃତ ବର ନ ମିଳିବା ଯାଏଁ, ସେହି ଛୁରୀହିଁ ତା'ର ସ୍ୱାମୀରୂପେ ବିବେଚିତ ହୋଇଥାଏ ।

**ନୌକାର ନିଦ୍ରାଭଙ୍ଗ—**

ଦକ୍ଷିଣ ପୂର୍ବ ଏସିଆର କାମ୍ବୋଡ଼ିଆ ( ବର୍ତ୍ତମାନ କାମ୍ପୁଚିଆ ) ଖେମର୍‌ସ ଜାତି ଲୋକଙ୍କର ବିଶ୍ୱାସ ଅଛି ଯେ, ନୂତନ ନୌକା ନିର୍ମାଣ ବେଳେ ତା ନିକଟରେ ଗୀତ ଓ ବାଦ୍ୟଯନ୍ତ୍ର ପରିବେଷଣ କରି ତାର ନିଦ୍ରାଭଙ୍ଗ କରିବାକୁ ପଡ଼େ । ତା ନହେଲେ ନୌକାଟି ନିଶ୍ଚୟ ଜଳରେ ବୁଡ଼ିଯିବ ।

**ଧନର ଆବଶ୍ୟକତା—**

- ଧନରେ ପୁସ୍ତକ କ୍ରୟ କରାଯାଇପାରେ, କିନ୍ତୁ ଜ୍ଞାନ ନୁହେଁ ।
- ଧନରେ ପତ୍ନୀ ମିଳିପାରେ, କିନ୍ତୁ ସନ୍ତାନ ନୁହେଁ ।
- ଧନରେ ଚଶମା କ୍ରୟ କରାଯାଇପାରେ, କିନ୍ତୁ ଦେଖି ହୁଏନି ।
- ଧନରେ ପ୍ରାସାଦ ନିର୍ମାଣ କରାଯାଇପାରେ, କିନ୍ତୁ ସୁଖ ମିଳିପାରେ ନାହିଁ ।
- ଧନରେ ଅଳଙ୍କାର କ୍ରୟ କରାଯାଇପାରେ, କିନ୍ତୁ ସୌନ୍ଦର୍ଯ୍ୟ ନୁହେଁ ।
- ଧନ ବଦଳରେ ଖୋସାମଦ୍ ମିଳିପାରିବ, କିନ୍ତୁ ସତ୍ ପ୍ରେମ ନୁହେଁ ।

## ବର୍ଷ ମାସର ହିସାବ—

- ପ୍ରତ୍ୟେକ ବର୍ଷର ପ୍ରଥମ ଓ ଶେଷଦିନ ଏକବାରରେ ପଡ଼େ ।
- ଅକ୍ଟୋବର ମାସର ପ୍ରଥମ ତାରିଖ ଯେଉଁବାରେ ପଡ଼େ; ଜାନୁଆରୀ ମାସର ପ୍ରଥମ ତାରିଖ ମଧ୍ୟ ସେହିବାରରେ ପଡ଼େ ।
- ମେ, ଜୁନ୍ ଏବଂ ଅଗଷ୍ଟ ମାସର ପ୍ରଥମ ଦିନ ସବୁବେଳେ ଭିନ୍ନ ଭିନ୍ନ ବାରରେ ଆରମ୍ଭ ହୁଏ ।
- ଫେବୃଆରୀ, ମାର୍ଚ୍ଚ ଏବଂ ନଭେମ୍ବର ମାସର ପ୍ରଥମ ଦିନ ଗୋଟିଏ ବାରରେ ଆରମ୍ଭ ହୁଏ ।
- କୌଣସି ବର୍ଷର କ୍ୟାଲେଣ୍ଡର ଠିକ୍ ଚାର ୨୦ ବର୍ଷ ପରେ ଅବିକଳ ସେମିତି ଆସେ । ଜମା ଟିକେ ବି ପରିବର୍ତ୍ତନ ହୁଏନି ।

## ଓଡ଼ିଆ ଢଗଢ଼ମାଳ—

ବାଇଗଣ ଫୁଲ ଚଳକୁ
ଉଠ ଦେଉଳୁଭ ଦୁଆର ମୁହଁରୁ ଯଉବେ ।ହୁ ଯିବେ ଘରକୁ ।

●

ଝିମିଟି ଗଛର ଡାଳ ମୂଳ କଣ୍ଟା ଫୁଲ ଫୁଟିଥାଏ ରଙ୍ଗ
ଚହଟ ସ୍ୱାଧୀନ ମଞ୍ଚରେ ସିନ୍ଦୁର ଦୂରକୁ ଦିଶଇ ଢଙ୍ଗ ।

●

ଗାଈ ନ ବୋବାଏ ଗାଉଡ଼ ଚିହ୍ନି ଖାଉଡ଼ ଧାଉଁଛି ଛଦଣୀ ଘେନି ।

●

ଟୋକେଇ ପାଖରେ କୁଣ୍ଡେଇଟାଏ,
ମିଛରେ ବୋଲିବେ ତୁଣ୍ଡେଇଟାଏ ।

●

ହାତୀ ଅନ୍ଧପାଖେ ନଡ଼ିଆ ଗଛ, ଘରକୁ ମାଡଲା ଶିଅ ,
ବୋହୁଙ୍କର ଗୁଣ ଦାଣ୍ଡେ ମହକିବ ଦିଶିଲାଣି ଥୟ ହୁଅ ।

●

କପାଳ ଦଣ୍ଡା, ଘରେ ଗିରିଷମ ବାହାରେ ମଶା ।

●

ଶାଗ ଖରଚଲି ପଚର ଢଳେଇ ମଝିରେ ରହିଲା କଞା
ଦାନ୍ତକାଠି ଘିନ କି ମାଡ ମାଇଲୁ ପିଠିରେ ରହିଲା ଘଞା ।

●

ଓଳି ଗୁଣେ କୋଳି, ପଳମ ଗୁଣେ ସବୁ ଚକୁଳି ଦଉଥା ପିଠଉ ବୋଳି ।

ଚୟନିକା—

- ସ୍ପେନ ହେଉଛି ୟୁରୋପର ସବୁଠାରୁ ପୁରୁଣା ନଗର ।
- ଇଟାଲୀର ଭିଏନା ସହରରେ ପୃଥିବୀର ପ୍ରାଚୀନତମ ଥିଏଟର ଗୃହ ଅଛି ।
- ଗ୍ରେଟ୍‌ବ୍ରିଟେନ୍‌ର ଡାକଟିକେଟ୍‌ରେ ସେ ଦେଶର ନାମ ଛାପା ଯାଏନାହିଁ ।
- ଚିଲୀରୁ ସର୍ବପ୍ରଥମେ ଭାରତକୁ ଚୀନାବାଦାମ ଆସିଥିଲା ।
- ବାହ୍ରେଇନ୍ ଓ ଦକ୍ଷିଣ କୋରିଆ ଲୋକେ ଅଗଷ୍ଟ ୧୫ ତାରଖରେ ସେମାନଙ୍କର ସ୍ୱାଧୀନତା ଦିବସ ପାଳନ କରିଥାନ୍ତି ।
- ପୃଥିବୀରେ ସର୍ବମୋଟ ୩୪୨୪ ପ୍ରକାର ଭାଷା ପ୍ରଚଳିତ ।
- ଭାରତର ପ୍ରଥମ ସମ୍ବାଦପତ୍ର ହେଉଛି ବେଙ୍ଗଲ ଗେଜେଟ୍ । ଏହାର ସମ୍ପାଦକ ଥିଲେ ଜେମ୍‌ସ ହିକି ।
- ତୁଳସୀଦାସଙ୍କ ରଚିତ 'ରାମଚରିତ ମାନସ' ଗ୍ରନ୍ଥରେ କୌଣସିଠାରେ ମାତ୍ରାହୀନ 'ଣ'ର ବ୍ୟବହାର ହୋଇନାହିଁ ।
- ପୃଥିବୀରେ ଗଭୀରତମ ସମୁଦ୍ର ହେଉଛି କାଷ୍ପିଆନ ସାଗର ।
- ଦକ୍ଷିଣ ଆମେରିକାସ୍ଥ ଚିଲୀର 'ଆଟାକାମା' ମରୁଭୂମି ହେଉଛି ପୃଥିବୀର ଶୁଷ୍କତମ ସ୍ଥାନ ।
- ୧୮୪୩ ମସିହା ମାର୍ଚ୍ଚ ୩ ତାରିଖ ଦିନ ପୃଥିବୀର ସର୍ବପ୍ରଥମ ତାରବାର୍ତ୍ତା ୱାସିଂଟନରୁ ବାଲଟିମୋରକୁ ପଠାଯାଇଥିଲା ।
- ସୋଡିୟମ୍ ନାମକ ଧାତୁ ପାଣିରେ ଜଳେ ।
- ରକ୍ତ କେବଳ ଇଥରରେ ଦ୍ରବିଭୂତ ହୋଇପାରେ ।
- ଚୀନର ବିଖ୍ୟାତ ପ୍ରାଚୀରର ଦୈର୍ଘ୍ୟ ୧୨୫୯ ମାଇଲ, ପ୍ରସ୍ଥ ୧୨ଫୁଟ ୬ ଇଞ୍ଚ ଏବଂ ଉଚ୍ଚତା ୧୧୨ ଫୁଟ ।
- ପ୍ରଥମ ଅଲମ୍ପିକ୍ କ୍ରୀଡ଼ା ପ୍ରତିଯୋଗିତା ଖ୍ରୀ: ପୂ: ୨୨୮ରେ ଆରମ୍ଭ ହୋଇଥିଲା ।
- ରାମେଶ୍ୱର ମନ୍ଦିରର ଅଗଣା ଭାରତରେ ବୃହତ୍ତମ । ଏହାର ଦୈର୍ଘ୍ୟ ୨୫୦୦୦ ଫୁଟ ।
- ଯୁକ୍ତରାଷ୍ଟ୍ରରେ ୧୮୭୩ ମସିହାରେ ସର୍ବପ୍ରଥମେ ପୋଷ୍ଟକାର୍ଡ ପ୍ରଚଳନ ହେଲା ।
- ୧୯୭୧ ଜନଗଣନା ଅନୁସାରେ ଭାରତର ଗ୍ରାମ ସଂଖ୍ୟା ୫୭୫୯୩୬ ।
- ଚୁନା ଏବଂ ଗନ୍ଧକୁ ଚୁମ୍ବକ ଆକର୍ଷଣ କରିପାରେ ନାହିଁ ।



ମନପବନ

( ଛବିଳ ମାସିକ ଶିଶୁ ପତ୍ରିକା )

ଆଲୋକ

(ମାସିକ ଓଡ଼ିଆ ଡାଇଜେଷ୍ଟ )

ବିଜ୍ଞାନପ୍ରଭା

(ମାସିକ ବିଜ୍ଞାନ ପତ୍ରିକା )

ସରଳା

( ମାସିକ ମିଶ୍ର ପତ୍ରିକା : ଧର୍ମ, ପୁରାଣ, ବେଦ, ତନ୍ତ୍ର, ସାହିତ୍ୟ, ମହିଳା, ସିନେମା ଓ ଖେଳ ଇତ୍ୟାଦି ।)

ପ୍ରକାଶକ :

ଜେ. ମହାପାତ୍ର ଏଣ୍ଡ କୋ.

ନମଚଉଡ଼ (ଭାଷାକୋଷ ଲେନ) କଟକ-୨